ଓଡ଼ିଶା ଶିକ୍ଷା ବିଭାଗୀୟ ଡିରେକ୍ଟର ମହୋଦୟଙ୍କ ଦ୍ୱାରା ୪ର୍ଥ
ଶ୍ରେଣୀର ଅତିରିକ୍ତ ପାଠ୍ୟ ପୁସ୍ତକରୂପେ ଅନୁମୋଦିତ

---

# ଆଦର୍ଶ ଜୀବନ କାହାଣୀ

## ପ୍ରଥମ ଖଣ୍ଡ

[ ଚତୁର୍ଥ ଶ୍ରେଣୀ ନିମନ୍ତେ ]

ଲେଖକ

ଶ୍ରୀ ବନମାଳୀ ବ୍ରହ୍ମଚାରୀ

ପ୍ରକାଶକ

ଶ୍ରୀ ଉଦୟନାଥ ରଥ

ଦି ସିଟି ବୁକ୍ ଡିପୋ

ବାଲୁବଜାର, କଟକ—୨

ମୂଲ୍ୟ ଟ ୦ ୳୵ ୭୨ ନୂଆ ପଇସା

# ସୂଚୀ



—:o:—

କବିସୂର୍ଯ୍ୟ

# ବଳଦେବ ରଥ

( ୧୭୮୯-୧୮୪୫ )

କବିସୂର୍ଯ୍ୟଙ୍କ ପୂର୍ବପୁରୁଷ ପୁରୀ ଜିଲ୍ଲାର ଲୋକ । ତାଙ୍କ ପିତା ଉଜ୍ଜ୍ୱଳ ରଥ ଜଣେ ବଡ଼ ପଣ୍ଡିତ ଥିଲେ । ସେ ବଡ଼ଖେମୁଣ୍ଡି ରାଜାଙ୍କଠାରୁ 'କବିରାଜ ବ୍ରହ୍ମା' ଉପାଧି ପାଇ ସେହିଠାରେ ଘରଦ୍ୱାର କରି ରହିଥିଲେ । ଗଞ୍ଜାମ ଆଠଗଡ଼ର ନିପୁରର ଓତା କବିସୂର୍ଯ୍ୟଙ୍କ ଅଜାଥିଲେ । ସେ ମଧ୍ୟ ଜଣେ ଜଣାଶୁଣା ପଣ୍ଡିତ ଥିଲେ । ବଳଦେବ ଦଶବର୍ଷର ହୋଇଥାନ୍ତି, ତାଙ୍କ ମା' ମରିଗଲେ । ଅଜା ତାଙ୍କୁ ନିଜ ଘରକୁ ନେଇ ସେଠାରେ ସଂସ୍କୃତ ଓ ଓଡ଼ିଆ ପଢ଼ାଇଥିଲେ ।

ସେ ଗଞ୍ଜାମ ଜିଲ୍ଲାର ଜଳନ୍ତରା, ମନ୍ଦସା ଓ ମଞ୍ଜୁଷା ରାଜ୍ୟରେ ମେନେଜର ହୋଇ ସୁନ୍ଦର ଭାବରେ ରାଜ୍ୟ ଚଳାଉ ଥିଲେ । ପ୍ରଜାମାନଙ୍କର ମଙ୍ଗଳପାଇଁ ଅନେକ ଭଲ କାର୍ଯ୍ୟ କରିଥିଲେ ।

କବିସୂର୍ଯ୍ୟ ସଂସ୍କୃତ ଓ ଓଡ଼ିଆରେ ଅନେକ ବହି ଲେଖିଛନ୍ତି । ତାଙ୍କର ଓଡ଼ିଆ କବିତାଗୁଡ଼ିକ ଅତି ସୁନ୍ଦର । 'ଗୋଟିପୁଅ'ମାନେ ନାଚିଲା ବେଳେ ତାଙ୍କ ରଚିତ ଅଧିକାଂଶ କବିତା ବୋଲି ଥାଆନ୍ତି ।

ଜଳାନ୍ଧରର ରାଜା ତାଙ୍କୁ 'କବଚୂଡ଼ାମଣି' ଉପାଧି ଦେଇଥିଲେ । ପୁରୀ ରାଜା ସେହି ଉପାଧିକୁ ସ୍ୱୀକାର କଲେ ଏବଂ ସେହି ଉପାଧି ସାଙ୍ଗରେ ଗୋଟିଏ ସନନ୍ଦ ମଧ୍ୟ ଦେଲେ ।

—୧—

ବଳଦେବ ଅଜାଙ୍କ ଘରେ ଥାନ୍ତି । ଦିନେ ସେ ଓ ତାଙ୍କ ସାଙ୍ଗ ପିଲାମାନେ କିଛି କାଠ କୁଟା ଯୋଗାଡ଼ କରି ଗୋଟିଏ ଜାଗାରେ ଜମା କଲେ । ସଞ୍ଜ ହେଲେ ଅଗି ଜାଳିବେ ବୋଲି ମନ ଥାଏ । ସଞ୍ଜ ଦୁଇଟରୁ କାହୁଁ ଗୋଟାଏ କଳାହାଣ୍ଡିଆ ମେଘ ଘୋଟି ଆସିଲା । ଭାରି ଜୋରରେ ପବନ ବହିଲା । ବର୍ଷା ହେଲେ ଅଗି ଜଳିବ ନାହିଁ ସମସ୍ତେ ମୁହଁ ଶୁଖାଇ ଘରକୁ ଗଲେ । ବଳଦେବ ମଧ୍ୟ କାନ୍ଦି କାନ୍ଦି ଅଜାଙ୍କ ପାଖରେ ପହଞ୍ଚିଲେ । ଅଜାଙ୍କ ମନରେ ଭାରି କଷ୍ଟ ହେଲା । ସେ ନାତିକୁ ପଚାରି ସବୁ କଥା ଜାଣିଲେ ।

ଓଡ଼ା ତାଙ୍କ ଘରେ ଦୁର୍ଗାମୂର୍ତ୍ତି ରଖି ପୂଜା କରନ୍ତି । ତାଙ୍କ ପାଖରେ ଯେଉଁ ଜପ-ମାଳା ଥାଏ, ତାହା ମଲ୍ଲ ମଣିଷର ଦାନ୍ତରେ ତିଆରି । ସେ ତାହାକୁ ଧରି ମନ୍ଦିର ଭିତରେ ପଶି ଧ୍ୟାନରେ ବସିଲେ । କିଛି ସମୟ ପରେ ମେଘ ଓ ପବନ କୁଆଡ଼େ ଉଡ଼ିଗଲା । ପିଲାମାନେ ଆନନ୍ଦରେ ଅଗି ଜାଳିଲେ । ଅଦ୍ଭୁତ ଆଶ୍ଚର୍ଯ୍ୟର କଥା, ଯେଉଁ ସ୍ଥାନରେ ଅଗି ଜଳୁଥିଲା, ସେଠାରୁ କିଛି ଦୂରରେ କୁଆଡ଼େ ବଡ଼ ତୋଫାନ ହୋଇ ଗଛ ସବୁ ଭାଙ୍ଗି ପଡୁଥିଲା ।

—୨—

ଦିନେ ଅଜାଙ୍କ ଦେହ ଭଲ ନ ଥିବାରୁ ସେ ରାତିରେ ଖାଲି ଦୁଧ ପିଇବାକୁ ସ୍ଥିର କଲେ । ତାଙ୍କ ପାଖରେ ଦୁଧ ରଖାଗଲା ।

ଏହି ସମୟରେ ବଳଦେବ ଅଜାଙ୍କୁ ବ୍ୟସ୍ତ କରି କହୁଥାନ୍ତି, "ଅଜା, ଯେଉଁ ମନ୍ତ୍ରରେ ପବନ ବନ୍ଧ ହେଲା, ମୋତେ ସେ ମନ୍ତ୍ରଟା ଶିଖାଇ ଦିଅ।" ଅଜା ତାଙ୍କୁ ସେ ମନ୍ତ୍ର କହିବାକୁ ରାଜି ନୁହନ୍ତି । କାରଣ ସେ ଜାଣନ୍ତି, ଏପରି ମନ୍ତ୍ର ଯେଉଁମାନେ ଶିଖନ୍ତି, ତାଙ୍କ ବଂଶରେ କେହି ରହେ ନାହିଁ । ସେ ନାତିକୁ ଭୁଲେଇ ଦେବାପାଇଁ କହିଲେ, "ତୁ ଯା, ଠାକୁରାଣୀଙ୍କ ଘର ଖୋଲି ତାଙ୍କ ପାଖକୁ ଯିବୁ । ତାଙ୍କ ମୁହଁ ପାଖରେ ଏ ଦୁଧ ବେଲାଟା ଧରିବୁ । କହିବୁ, ଅଜା କହିଲେ ତୁ ଏ ଦୁଧ ପି।" ବଳଦେବ ସେହିପରି କଲେ । ଦେଖୁ ଦେଖୁ ପାତ୍ରରୁ ଦୁଧ ସରିଗଲା । ବଳଦେବ ଆସି ଅଜାଙ୍କୁ କହିଲେ "ଠାକୁରାଣୀ ସବୁ ଦୁଧ ପିଇଦେଲା ।" ଅଜା କହିଲେ, "ତୁ ପୁଣି ଯା ଠାକୁରାଣୀଙ୍କୁ ପଚାରିବୁ, ତୁ ତ ସବୁ ଦୁଧ ପିଇ ଦେଲୁ । ଅଜା ଅଜା ଘରେ କଣ ପିଇ ବଞ୍ଚିବ ?" ବଳଦେବ ଏହା କହିବା ପରେ ଦେବୀ ତାଙ୍କ ସ୍ତନ ପାଖରେ ବେଲାଟା ଧରିବାକୁ ଠାରିଲେ । ବଳଦେବ ତାହା କରନ୍ତେ ବେଲାଟି ଦୁଧରେ ପୂର୍ଣ୍ଣ ହୋଇଗଲା । ସେ ଫେରି ଆସି ଅଜାଙ୍କୁ କହିଲେ, "ଦେବୀ ତାଙ୍କ ନିଜ ଦୁଧ ଦେଲେ ।" ଓଡ଼ାଏ ଭାରି ଖୁସି ହୋଇଗଲେ ଓ ତାହା ନାତିକୁ ପିଆଇଲେ । ବଳଦେବ ଜାଣି ପାରିଲେ, ଦେବୀ ଅଜାଙ୍କୁ ପୁଅ ଭଳି ସ୍ନେହ କରନ୍ତି । ତେଣୁ ଅଜା ଏପରି ଅସାଧ୍ୟ କାମ କରିପାରନ୍ତି । ମନ୍ତ୍ର ଶିଖିବାକୁ ସେ ଆଉ ଜିଦ୍ କଲେ ନାହିଁ । ସେହି ଦୁଧ ପିଇବା ଯୋଗୁ ବଳଦେବ ବିଦ୍ୟାରେ ଏପରି ଧୁରନ୍ଧର ହୋଇଥିଲେ ।

— ୩ —

ବଳଦେବ ଥରେ ପୁରୀକୁ ଆସିଥିଲେ । ପୁରୀର ରାଜା ମୁକୁନ୍ଦ-ଦେବଙ୍କୁ ଭେଟିବାକୁ ତାଙ୍କର ଇଚ୍ଛା ହେଲା । ଜଗନ୍ନାଥଙ୍କ ମହାସୁଆର ବଳଦେବଙ୍କର ଜଣେ ବନ୍ଧୁ ଥିଲେ । ତାଙ୍କର ରାଜାଙ୍କ

ସହିତ ଭଲ ଲାଗିବ ଥିଲା । ବଳଦେବ ରଥେ ଯେତେ ମହାପ୍ରଭୁଙ୍କ ହାତରେ ଗୋଟିଏ ଗୋଟିଏ ନୂଆ ଶ୍ଳୋକ ଲେଖି ରାଜାଙ୍କ ପାଖକୁ ପଠାନ୍ତି । ଜଗନ୍ନାଥ ତାହା ରାଜାଙ୍କ ସଭାରେ ପଢ଼ନ୍ତି । ରାଜାଙ୍କ ପାଖରେ କେତେଜଣ ହିଂସୁକ ପଣ୍ଡିତ ଥାନ୍ତି । ସେମାନେ ବଳଦେବଙ୍କ ଶ୍ଳୋକକୁ ବାଜେ ଧରଣର କହି ହସରେ ଉଡ଼ାଇ ଦିଅନ୍ତି । ରାଜା ଆଉ ବଳଦେବଙ୍କ ସଭାକୁ ଡକାଇଲେ ନାହିଁ । ଏହିପରି କିଛିଦିନ ଗଲା । ଏଥିମଧ୍ୟରେ ବଳଦେବଙ୍କ ସୁନ୍ଦର କଣ୍ଠ ଓ ମଧୁର ଗୀତ କଥା ସମସ୍ତେ ଶୁଣିଲେ । ଦଳ ଦଳ ହୋଇ ଲୋକ ତାଙ୍କୁ ଭେଟିବାକୁ ଆସିଲେ । ରାଜାଙ୍କ କାନକୁ ମଧ୍ୟ ଏ କଥା ଗଲା । ଶେଷରେ ବଳଦେବ ଓଡ଼ିଆରେ ଗୋଟିଏ ଗୀତ ଲେଖି ରାଜାଙ୍କ ପାଖକୁ ପଠାଇଲେ । ରାଜା ତାହା ନିଜେ ପଢ଼ିଲେ ଓ ଭାରି ମୁଗ୍ଧ ହୋଇ ଗଲେ । ତହିଁ ଆର ଦିନ ମନ୍ଦିରରେ ତାଙ୍କ ସହ ଦେଖା କରିବାକୁ ବଳଦେବଙ୍କ ପାଖକୁ ଖବର ପଠାଇଲେ ।

ରାଜାଙ୍କ ସହ ଦେଖା ହେଲା । ଠାକୁରଙ୍କ ଅଲଗି ସରିଥାଏ । ରାଜା ତାଙ୍କୁ ଲକ୍ଷ୍ମୀ ଓ ଭଗବାନଙ୍କ ସମ୍ବନ୍ଧରେ ଗୋଟିଏ ଗୀତ ବୋଲିବାକୁ ବରାଦ କଲେ । ବଳଦେବ ରତ୍ନସିଂହାସନ ତଳେ ଠିଆ ହୋଇ ଶ୍ରୀ ଜଗନ୍ନାଥଙ୍କୁ ଏକ ଲୟରେ ଚାହିଁଛନ୍ତି । ଭକ୍ତିରେ ତାଙ୍କର ସାରା ଶରୀର ପୁଲକି ଉଠୁଛି । ସେହି ମୁହୂର୍ତ୍ତରେ ମୁହେଁ ମୁହେଁ ଗୀତ ତିଆରି ହୋଇ ଯାଉଛି । ବଳଦେବଙ୍କ ମଧୁର କଣ୍ଠରୁ ପ୍ରଥମ ଧାଡ଼ିଟି ବାହାରି ଆସିଲା—'ଧନ୍ୟ ହେ ନବକିଶୋର ସତୀ ଧୃତ ଧନଚୋର' । ସେ ଗୀତଟିକୁ ମୁକୁନ୍ଦଦେବଙ୍କ ନାମରେ ଭଣିତା କରି ଯେତେବେଳେ ବୋଲି ସାରିଲେ, ସେତେବେଳେ ରାଜା ଆନନ୍ଦ ଓ ବିସ୍ମୟରେ ଭୋଳ ହୋଇଗଲେ । ଗୀତ ଶୁଣୁଥିବା ଲୋକମାନେ ତାଙ୍କୁ ଧନ୍ୟ ଧନ୍ୟ କହିବାକୁ ଲଗିଲେ । ରାଜା

କହିଲେ, "ଆପଣ 'କବିସୂର୍ଯ୍ୟ' ହୋଇ ସାରିଛନ୍ତି । ଆମଠାରୁ ଗୋଟିଏ ନୂଆ ଉପାଧି ନିଅନ୍ତୁ ।" ବଳଦେବ କହିଲେ, "ମୋର କବିସୂର୍ଯ୍ୟ ଉପାଧି ସମସ୍ତେ ଜାଣିଗଲେଣି । ଯଦି ଯୁମ୍ଭଙ୍କର ଅନୁଗ୍ରହ ହୁଏ, ତେବେ ଏହି ଉପାଧିକୁ ଯୁମ୍ଭ ନିଜର ବୋଲି ସ୍ୱୀକାର କରନ୍ତୁ ।" ରାଜା କହିଲେ, "ତାହାହିଁ ହେଲା ।" ତା ପରେ ସେ ପାଟଶାଢ଼ୀ ଅଣାଇ ନିଜ ହାତରେ କବିଙ୍କ ମୁଣ୍ଡରେ ବାନ୍ଧି ଦେଲେ ।

—୪—

ଥରେ ବିଜୟ ନଗରରୁ ଜଣେ ନାମଜାଦା ଓସ୍ତାଦ ଅଠଗଡକୁ ଆସିଥିଲେ । ସେ ଗୀତ ବୋଲିଲେ ଜଙ୍ଗଲର ଜୀବଜନ୍ତୁ ତାଙ୍କ ଗୀତ ଶୁଣିବା ପାଇଁ ତାଙ୍କ ପାଖକୁ ଆସିବେ ବୋଲି କହିଲେ । ରାଜା ବାଲୁଙ୍କେଶ୍ୱର ତାଙ୍କୁ ଆଦର କରି ରଖାଇଲେ । ସେଠାରୁ ଅଳ୍ପ ଦୂରରେ ଜଙ୍ଗଲ ଭିତରେ ଗୋଟିଏ ନାଗେଶ୍ୱର ବଗିଚା ଥିଲା । ସେହି ବଗିଚାରେ ଓସ୍ତାଦଙ୍କୁ ପରୀକ୍ଷା କରିବାର ଠିକ୍ ହେଲା । ଅନେକ ଲୋକ ଆସିଲେ । ବୈଶାଖ ପୂର୍ଣ୍ଣିମା ରାତି । ଓସ୍ତାଦ ନାଗେଶ୍ୱର ଫୁଲର ହାରଟିଏ ବେକରେ ପିନ୍ଧି ଗୀତ ବୋଲିବାକୁ ଆରମ୍ଭ କଲେ । ଲୋକମାନେ ପଲକ ନ ପକାଇ ତାଙ୍କରି ଆଡେ ଚାହିଁଛନ୍ତି । କି ସୁନ୍ଦର ଗୀତ, କେଡେ ମଧୁର ତାଙ୍କ କଣ୍ଠ ! ଏହି ସମୟରେ ଦେଖାଗଲା, ଗୋଟିଏ ହରିଣୀ ଅସି ତାଙ୍କ ପାଖରେ । ଓସ୍ତାଦ ବେକରୁ ହାରଟି କାଢ଼ି ହରିଣୀ ଗଳାରେ ଲମ୍ବାଇ ଦେଲେ । ସେ ଭୟପାଇ ପଳାଇଲା ।

ବଳଦେବ ଓସ୍ତାଦଙ୍କ ଗୁଣ ଶୁଣିଲା ଦିନୁ ଭାବୁଥିଲେ, ମୁଁ କାହିଁକି ନ ପାରିବି ! ସେଥିଲାଗି ସେ ଗୋଟିଏ ଗୀତ ଲେଖି ତାଙ୍କର ପ୍ରିୟ ଗାୟକ ମଦନମଣିକୁ ଶିଖାଇଲେ । ଓସ୍ତାଦଙ୍କ କାମ ସରିବା

ପରେ ସେ ତାଙ୍କୁ ଗୀତଟି ବୋଲିବାକୁ କହିଲେ । ସେହି ହରିଣୀଟି ତାଙ୍କ ପାଖକୁ ମଧ୍ୟ ଆସିଲା ।

ଓସ୍ତାଦ, ବଳଦେବ ଓ ତାଙ୍କ ଶିଷ୍ୟ ମଦନମଣିକୁ ବହୁତ ପ୍ରଶଂସା କଲେ ।

—୪—

ଆଠଗଡ଼ର ରାଜା ବାଲୁଙ୍କେଶ୍ୱରଙ୍କର ପଠା ରୋଗ ହେଲା । ଯେତେ ଉପାୟ କଲେହେଁ ରୋଗ ଭଲ ହେଲା ନାହିଁ । ରାଜା ବଳଦେବଙ୍କୁ ଦେଖିବାପାଇଁ ଡକାଇ ପଠାଇଲେ । ସେ ଗଲେ ଏବଂ ରାଜାଙ୍କ ଅବସ୍ଥା ଦେଖି ଦୁଃଖ କଲେ । କଅଣ ମନ୍ତ୍ରକୁ ଭାବି ସେ ଅଜାଙ୍କଠାରୁ ଶିଖିଥିବା ଗୋଟିଏ ଦେବୀ ମନ୍ତ୍ର ସେଠାରେ ଜପିବାକୁ ଲାଗିଲେ । ଏହି ସମୟରେ ଗୋଟାଏ କଥା ତାଙ୍କ ମନକୁ ଆସିଲା । ସେ ବିଚାରିଲେ, ଯଦି ସେ କୌଣସିମତେ ରାଜାଙ୍କୁ ହସାଇ ପାରନ୍ତେ, ତେବେ ହସ ଜୋରରେ ପଠାଟା ଫାଟି ଭଲ ହୋଇଯାନ୍ତା । ସେ ସଙ୍ଗେ ସଙ୍ଗେ ଏପରି ଗୋଟିଏ ଗୀତ ଲେଖିଲେ ; ଯାହା ଶୁଣିଲେ ମଣିଷ ହସି ହସି ବେଦମ ହୋଇଯିବ । ଗୀତଟି ବୋଲା ହେଲା । ରାଜା ସେହି ଗୀତ ଶୁଣୁ ଶୁଣୁ ଏକଦମ ଭୋଳ ହୋଇ ହସିବାକୁ ଲାଗିଲେ, ପଠାଟା ଫାଟିଗଲା । ରାଜା ଅସ୍ତେ ଅସ୍ତେ ଭଲ ହୋଇଗଲେ ।

---

# ମହାମହୋପାଧ୍ୟାୟ

# ସାମନ୍ତ ଚନ୍ଦ୍ରଶେଖର ସିଂହ

## ହରଚନ୍ଦନ ମହାପାତ୍ର

ଜନ୍ମ—୧୧ ଜାନୁୟାରୀ ୧୮୩୫ ମୃତ୍ୟୁ—୧୦ ଜୁନ୍ ୧୯୦୪

ସାମନ୍ତ ଚନ୍ଦ୍ରଶେଖର ଖଣ୍ଡପଡ଼ା ରାଜବଂଶରେ ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଶ୍ୟାମବନ୍ଧୁ ସିଂହ ଓ ମାତାଙ୍କ ନାମ ବିଷ୍ଣୁମାଳୀ । ତାଙ୍କର ଉପର ଭାଇ ମରିଯାଇଥିବାରୁ ତାଙ୍କର ଅପତ୍ୟାଣି ନାମ ଥିଲା 'ପଠାଣି' ।



ସେ ପ୍ରଥମେ ନିଜ ଗାଁ ଚାଟଶାଳୀରେ ପଢ଼ା ଆରମ୍ଭ କରିଥିଲେ । ପିଲାଦିନରୁ ବ୍ୟାକରଣ, ସ୍ମୃତି, ପୁରାଣ,

ଆୟୁର୍ବେଦ ଓ ଜ୍ୟୋତିଷ ପ୍ରଭୃତି କଠିନ ସଂସ୍କୃତ ଶାସ୍ତ୍ରମାନ ପଢ଼ିଥିଲେ ।

ପନ୍ଦର ବର୍ଷ ବେଳକୁ ତାଙ୍କର ଜ୍ୟୋତିଷ ଶାସ୍ତ୍ରରେ ଦକ୍ଷତା ଜାତ ହେଲା । ଦିନରେ ବହିପଢ଼ିବା ଓ ରାତିରେ ଆକାଶକୁ ଚାହିଁବା ତାଙ୍କର ପ୍ରତିଦିନର କର୍ତ୍ତବ୍ୟ ଥିଲା । ସେ କୋଡ଼ିଏ ବର୍ଷ କାଳ ପରିଶ୍ରମ କରି ସଂସ୍କୃତ ଭାଷାରେ ସିଦ୍ଧାନ୍ତ ଦର୍ପଣ ନାମକ ଖଣ୍ଡିଏ ବହି ଲେଖିଛନ୍ତି ।

ସେ ଜଣେ ମହା ପଣ୍ଡିତ ବୋଲି ସରକାର ୧୮୯୩ ଖ୍ରୀଷ୍ଟାବ୍ଦରେ ତାଙ୍କୁ ମହାମହୋପାଧ୍ୟାୟ ଉପାଧି ଦେଇଥିଲେ ଓ କେତେକ ଦିନ ପାଇଁ ମାସିକ ପଚାଶ ଟଙ୍କା ବୃତ୍ତି ଦେଇଥିଲେ ।

ତାଙ୍କ ଲିଖିତ ପାଞ୍ଜି ଓଡ଼ିଶାରେ ନାନା ସ୍ଥାନରେ ଚଳେ । ତାଙ୍କ ନାମ ଅନୁସାରେ ପୁରୀ କଲେଜର ନାମ 'ସାମନ୍ତ ଚନ୍ଦ୍ରଶେଖର କଲେଜ' ହୋଇଅଛି ।

ସାମନ୍ତଙ୍କ ଅବସ୍ଥା ଭଲ ନ ଥିଲା । ତଥାପି ସେ ଦାନ କରିବାକୁ କୁଣ୍ଠିତ ହେଉ ନ ଥିଲେ । ସେ ଭାରି ଦୟାଳୁ, ସତ୍ୟବାଦୀ ଓ ବିନୟୀ ଥିଲେ । ତାଙ୍କର ଟିକିଏ ହେଲେ ଗର୍ବ ନଥିଲା ।

— ୧ —

ସାମନ୍ତ ବାଇଶି ବର୍ଷ ବୟସରେ ଅନୁଗୁଳ ରାଜବଂଶର କନ୍ୟା ସୀତା ଦେବୀଙ୍କୁ ବିବାହ କରିଥିଲେ । ସାମନ୍ତ ବଡ଼ ପାଠୁଆ ଓ ଗୁଣୀ ସିନା, ମାତ୍ର ତାଙ୍କର ଚେହେରା ଦେଖିବାକୁ ଭଲ ନୁହେଁ । ବିବାହ ବେଦୀରେ କନ୍ୟାର ମା' ବରର ରୂପ ଦେଖି ରାଗିଗଲେ ଓ ବିବାହ

ବନ୍ଦ କରିଦେବା ପାଇଁ ଗୋଳମାଳ ଆରମ୍ଭ କଲେ । ବରଯାତ୍ରୀ-ମାନଙ୍କ ମଧ୍ୟରୁ ଜଣେ ସାମନ୍ତଙ୍କୁ କହିଲା, "ସାଆନ୍ତେ, ଆମେ ଶିଶୁପାଳ ହୋଇଯିବା କି ?" ସାମନ୍ତ କହିଲେ, "ହେଉ, ତେବେ ଦେଖିବା ।" ତା ପରେ ସେ 'ଦମୟନ୍ତୀ-ସ୍ୱୟମ୍ବର'ରୁ ଶ୍ଳୋକ ପଢ଼ି ତାହା ବୁଝାଇବାକୁ ଲଗିଲେ । ତାଙ୍କର ମେଘ ଗର୍ଜନ କରି ଗମ୍ଭୀର ଶବ୍ଦ, ପ୍ରଚୁର ଜ୍ଞାନ ଓ ଅର୍ଥ ବୁଝାଇବାର ଠାଣି ଦେଖି ସମସ୍ତେ ମୁଗ୍‌ଧ ହୋଇଗଲେ । କନ୍ୟାର ପିତା ମଧ୍ୟ ଆନନ୍ଦରେ ଜୋଇଁ ସଙ୍ଗରେ ଝିଅକୁ ବିଦାୟ ଦେଲେ ।

— ୨ —

ଥରେ ଥିବେଠ୍ ସାହେବ ସାମନ୍ତଙ୍କୁ କେତେକ ପ୍ରଶ୍ନ ପଚାରିବା ପାଇଁ କଟକ ଆସିଥିଲେ । ସମସ୍ତଙ୍କୁ ଖଣ୍ଡପଡ଼ାରୁ ଅଣାଗଲା । ସାହେବ ତାଙ୍କୁ ତିନୋଟି ପ୍ରଶ୍ନ ପଚାରିଲେ ଓ ସେ ସଙ୍ଗେ ସଙ୍ଗେ ସେଗୁଡ଼ିକର ଉତ୍ତର ଦେଲେ । ତା ପରେ ସାମନ୍ତ ସାହେବଙ୍କୁ ଗୋଟିଏ ପ୍ରଶ୍ନ ପଚାରିଲେ । ସାହେବ ଉତ୍ତର ଦେଇ ପାରିବେ ନାହିଁ ଜାଣି ହିନ୍ଦିରେ କହିଲେ, "ଗ୍ଳୋବ ନ ଦେଖିଲେ କହି ପାରିବ ନାହିଁ !" ସାମନ୍ତ କହିଲେ, "ହେଉ କାଲିକି କହିବେ ।"

ସାହେବ—ଗ୍ଳୋବ ବିଲାତରେ ଅଛି ।
ସାମନ୍ତ—ମାନ୍ଦ୍ରାଜ ଓ କଲିକତାରେ ତ ଅଛି ।
ନ କହିବେ ତ ନାହିଁ ମିଛ କାହିଁକି କହୁଛନ୍ତି ?

ସାହେବ ସାମନ୍ତଙ୍କର ହାତ ଧରି ପକାଇ ହସି ହସି କହିଲେ, ସଲାମ୍, ସଲାମ୍ ।

—୩—

ସମସ୍ତେ ଜାଣନ୍ତି—ସୂର୍ଯ୍ୟ ସ୍ଥିର ଅଛି ଓ ପୃଥିବୀ ତାହାର ଚାରି ପାଖରେ ଘୂରୁଛି । ମାତ୍ର ସାମନ୍ତ ପ୍ରମାଣ କରିଥିଲେ ଯେ ପୃଥିବୀ ସ୍ଥିର ଅଛି ଏବଂ ସୂର୍ଯ୍ୟ ଘୂରୁଛି । ଥରେକେ ସାହେବଙ୍କର ଜଣେ ସାଙ୍ଗ ସାମନ୍ତଙ୍କ ସାନ ପୁଅକୁ କହିଲେ, "ଆପଣ ପିତାଙ୍କୁ ବୁଝାଇ ଦିଅନ୍ତୁ । ସେ ଯଦି ପୃଥିବୀ ଭ୍ରମଣ କରୁଛି ବୋଲି ମତ ଦେବେ, ତେବେ ସରକାର ତାଙ୍କୁ ଭଲ ପାଇବେ ।" ସାମନ୍ତ ପୁଅଠାରୁ ତାହା ଶୁଣି କହିଲେ, "ମୋର ମତାମତ ବଦଳାଇ ପାରିବି ନାହିଁ । ସେଥିପାଇଁ ସରକାର ମୋତେ ହାଜତରେ ରଖନ୍ତୁ ବା ଜେଲ ଦିଅନ୍ତୁ ।"

—୪—

ପୁରୀ ମନ୍ଦିରରେ ପ୍ରତିହାରୀମାନେ ବେତରେ ଆଘାତ କରନ୍ତି । ସାମନ୍ତ ସେହି ବେତ ମାଡ଼କୁ ଅତି ପବିତ୍ର ମନେ କରୁଥିଲେ । ସେ ପ୍ରତିଦିନ ଜଗନ୍ନାଥ ମନ୍ଦିରକୁ ଯାଉଥିଲେ । ମାତ୍ର କେବେ ହେଲେ ତାଙ୍କ ପିଠିରେ ବେତ ବସୁ ନ ଥିଲା । ଦିନେ ସେ ଜଗନ୍ନାଥଙ୍କ ସାମ୍ନାରେ କରଯୋଡ଼ି ପ୍ରାର୍ଥନା କଲେ, "ପ୍ରଭୋ, ମୁଁ ମହାପାପ କରିଥିବାରୁ ମୋ ଦେହରେ ବେତ ମାଡ଼ ହେଉନାହିଁ । ଏଣୁ ମୋର ସେ ସବୁ ପାପ କିପରି ଦୂର ହେବ, ସେଥିଲାଗି କୃପା କରନ୍ତୁ ।" ଏତିକି ଜଣାଇ ଦର୍ଶନ ସାରି ଫେରିବା ବେଳକୁ ଜଣେ ପ୍ରତିହାରୀଙ୍କ ବେତ ମାଡ଼ ତାଙ୍କ ପିଠିରେ ବସିଲା । ସେ ଆନନ୍ଦରେ ଗଦ୍‌ଗଦ୍ ହୋଇ ପଡ଼ିଲେ ଏବଂ 'କୃତାର୍ଥ ହେଲି', 'ଧନ୍ୟ ହେଲି' ବୋଲି କହିବାକୁ ଲାଗିଲେ ।

—୪—

ସାମନ୍ତଙ୍କୁ 'ମହାମହୋପାଧ୍ୟାୟ' ଉପାଧି ଓ ସନନ୍ଦ ମିଳିବ ବୋଲି କଟକ ଦରବାରରେ ପହଞ୍ଚିବାକୁ ତାଙ୍କ ପାଖକୁ ପତ୍ର ପଠା ଯାଇଥିଲା । ସାମନ୍ତଙ୍କ ପ୍ରଭୁତ୍ୱ ନଷ୍ଟବର ସିଂହ ସେତେବେଳେ ଖଣ୍ଡପଡ଼ାରେ ରାଜା ଥିଲେ । ସାମନ୍ତ ଜଣେ ବଡ଼ ପଣ୍ଡିତ ଏ କଥା ସେ ସହ ପାରନ୍ତି ନାହିଁ । ସମସ୍ତେ ସାମନ୍ତଙ୍କର ପ୍ରଶଂସା କରୁଛନ୍ତି, ଏକଥା ତାଙ୍କୁ ବିଷ ପରି ଲାଗେ । ରାଜା ସାମନ୍ତଙ୍କ ଉପରେ ନାନା ପ୍ରକାର ଅତ୍ୟାଚାର କରୁଥିଲେ, ମାତ୍ର ସେ ସବୁ ସହି ଯାଉଥିଲେ । ସାମନ୍ତ କଟକ ଯିବାକୁ ବସିବାରୁ ରାଜା ତାଙ୍କୁ ବାରଣ କଲେ । ସାମନ୍ତଙ୍କର ଜଣେ ଶିଷ୍ୟ ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ସାହେବଙ୍କୁ ଜଣାଇ ଦେଲେ ଯେ, ଖଣ୍ଡପଡ଼ା ରାଜା ସାମନ୍ତଙ୍କୁ କଟକ ଛାଡ଼ୁ ନାହାନ୍ତି । ତେଣୁ ରାଜାଙ୍କ ନାଁରେ ୱାରେଣ୍ଟ ବାହାରି ଗଲା । ରାଜା ଡ଼ରିଗଲେ ଓ ସାମନ୍ତଙ୍କୁ ଡଙ୍ଗାରେ ପଠାଇ ଦେଲେ । ସାମନ୍ତ କଟକରେ ପହଞ୍ଚି କମିଶନର ସାହେବଙ୍କୁ ଦେଖା କଲେ । କହିଲେ, "ମୁଁ ଶୁଣୁଛି ଆମ ରାଜାଙ୍କ ନାମରେ ୱାରେଣ୍ଟ ବାହାରିଛି । ଆପଣ ରାଜାଙ୍କୁ କ୍ଷମା ଦିଅନ୍ତୁ ।" ସାହେବ ରାଜି ହେଉ ନ ଥିଲେ, ମାତ୍ର ସାମନ୍ତ ବାରମ୍ବାର ଅନୁରୋଧ କରିବାରୁ ରାଜାଙ୍କୁ କ୍ଷମା ଦିଆଗଲା ।

—୬—

କମିସନର ସାହେବଙ୍କୁ ଦେଖା କଲାବେଳେ ସାହେବ ତାଙ୍କୁ ସପ୍ତଶଯ୍ୟା ପର୍ବତ ଦେଖାଇ କହିଲେ, "ଏ ପାହାଡ଼ କେତେ ଉଚ୍ଚ କହି ପାରିବେ ?" ତହୁଁ ସାମନ୍ତ ବସାରୁ ମାନଯନ୍ତ୍ର ଓ ପାଞ୍ଚି ଅଣାଇ ଶଙ୍କୁ ପୋତିଲେ ଓ ମାନଯନ୍ତ୍ରରେ ଅନାଇ ଖଡିରେ ଗଣନା କରି କହିଲେ, "ଏହା ୧୧୨୮ ହାତ ୧୬ ଅଙ୍ଗୁଳ ହେଲା ।" ସାହେବ

ତାହା ଶୁଣି କୋଠି ଭିତରକୁ ଗଲେ ଓ ମାନଚିତ୍ର ଦେଖି ଜାଣିଲେ ସାମନ୍ତଙ୍କ ଗଣନା ଠିକ୍ । ସେ ସେହି ମାନଯନ୍ତ୍ରକୁ ମୁଣ୍ଡରେ ଲଗାଇ ସେଥିରେ ବାରମ୍ବାର ଦେଖିବାକୁ ଲାଗିଲେ ଓ ଖୁବ୍ ଖୁସି ହୋଇଗଲେ । ସାମନ୍ତ ନିଜେ ବାଉଁଶରେ ସେହି ମାନଯନ୍ତ୍ର ତିଆରି କରିଥିଲେ ।

—୭—

ସାମନ୍ତ ପ୍ରତିବର୍ଷ ପୁରୀରେ ମକର ବେଢ଼ା ଦେଖିବାକୁ ଯାନ୍ତି । ଥରେ ସେ ଦେହ ଭଲ ନଥିବାରୁ ଯାଇ ନ ପାରି ବଡ଼ ପୁଅକୁ ଯିବାକୁ କହିଲେ । ମାତ୍ର ସେ ଯିବାକୁ ରାଜି ନୁହନ୍ତି ବୋଲି ବାପାଙ୍କ ପାଖକୁ କହି ପଠାଇଲେ । ତହୁଁ ସାମନ୍ତ ଘରୁ ବାହାରି ପଡ଼ି କହିଲେ "ପୀତବାସ, ତୁମେ ବହୁତ ଶାସ୍ତ୍ର ପଢ଼ିଛ । ମୁଁ କହିଲି ଯାଅ ଜଗନ୍ନାଥଙ୍କୁ ଦର୍ଶନ କରିବ । ତୁମେ ଅରାଜି ହେଲ । ତୁମର ଦେହ ତ କିଛି ଖରାପ ହୋଇନାହିଁ । ହଉ, ମୁଁ ଯାଉଛି ।" ଏହା କହି ସାମନ୍ତ ସୁଆରିରେ ବସି ପୁରୀକୁ ବାହାରିଗଲେ ।

—୮—

ଥରେ ସାମନ୍ତ ଗୁଲ୍ ଗୁଲ୍ ପୁରୀକୁ ଗଲେ । ସେ ସମାନ ଦୂରରେ ପାଦ ପକାଇ ଯାଉଥାନ୍ତି । ଗାଧୋଇବା ପାଇଁ ବା ବିଶ୍ରାମ କରିବା ପାଇଁ ଗାଁ ଭିତରକୁ ଯିବାବେଳେ ସେ ରାସ୍ତାରେ ଗୋଟିଏ ଚିହ୍ନ ଦେଇ ଯାଆନ୍ତି । ଫେରି ଆସି ସେହି ଚିହ୍ନରୁ ପୁଣି ପାଦ ପକାନ୍ତି । ଚତୁର୍ଥ ଦିନ ସେ ପୁରୀରେ ପହଞ୍ଚିଲେ । ତାଙ୍କର ଜଣେ ସଙ୍ଗୀକୁ କହିଲେ; "ଆମ ଘରକୁ ସିଂହଦ୍ୱାର ପର୍ଯ୍ୟନ୍ତ ମୋ ପାହୁଣ୍ଡରେ ୧୫୧୨୦୦ ପାହୁଣ୍ଡ ହେଲା । ତାଳଭଙ୍ଗା କୋଶରେ ଏହା ସତାଇଶ କୋଶ ।" ସଙ୍ଗୀ ଜଣକ କହିଲେ,

"ଗୃହଲକ୍ଷ୍ମୀ ବେଳେ ଆମ ସାଙ୍ଗରେ କଥାବାର୍ତ୍ତା କରୁଥିଲ । ବାହାରେ ପୁଣି ନବଖେଳିବାସ ଇତ୍ୟାଦି ଅନେକ କାର୍ଯ୍ୟ ହେଉଥିଲା । ଏ ହିସାବ ରଖିଲ କିପରି ? ସାମନ୍ତ କହିଲେ, "ମୁଁ ଘରୁ ମନେ ମନେ ହିସାବ କରି ଗଣି ଗଣି ଆସୁଥିଲି ।"

—୯—

ସାମନ୍ତଙ୍କର ଇଚ୍ଛା ଥିଲା ସେ କିପରି ନୀଳାଚଳ କ୍ଷେତ୍ରରେ ମରନ୍ତେ । ସେ ଗଣନା କରି ଜାଣି ପାରିଲେ ଯେ ତାଙ୍କର ମରିବା ବେଳ ନିକଟ ହୋଇ ଆସିଲାଣି । ତେଣୁ ସେ ପୁରୀକୁ ବାହାରିଲେ । ଯିବା ପୂର୍ବରୁ ସେ ରାଜା ନଟବର ସିଂହଙ୍କ ଠାରୁ ବିଦାୟ ନେବାକୁ ଗଲେ । ତାଙ୍କୁ କହିଲେ, "ମୁଁ ଚଉଦ କୋଶ ଛାଡୁଛି । ଅଳ୍ପ ଦିନ ପରେ ଚଉଦ ପାଆ ଛାଡିବି ।" ନଟବର ଏ କଥାର ମର୍ମ ବୁଝି ପାରିଲେ ନାହିଁ । ସେ ଜଣେ ପଣ୍ଡିତଙ୍କୁ ପଚାରିଲେ । ପଣ୍ଡିତେ କହିଲେ—" ପୁରୀ ଏଠାରୁ ଚଉଦ କୋଶ ଦୂର ବୋଲି ସେ ଚଉଦ କୋଶ ଛାଡିବା କଥା କହିଲେ । ମଣିଷ ନିଜ ହାତରେ ଚଉଦ ପା ଅର୍ଥାତ୍ ସାଢେ ତିନି ହାତ ଲମ୍ବ । ସେ ଚଉଦ ପା ଛାଡିବେ ମାନେ ମରିଯିବେ ।" ସେ ମଝିଆ ପୁଅ ଗଦାଧରଙ୍କୁ ସାଙ୍ଗରେ ନେଲେ । ବଡ଼ ପୁଅକୁ କହିଲେ, 'ପୀତବାସ, ମୁଁ ଯାଉଛି । ତୁମ୍ଭେମାନେ ପରେ ଯିବ । ଭଲ ମନ୍ଦକୁ ଗଦାଧର ପାଖରେ ଅଛି । ପୁରୀରେ ପହଞ୍ଚିବାର ଷୋଳ ଦିନ ପରେ ତାଙ୍କର ମୃତ୍ୟୁ ହୋଇଥିଲା ।

—୧୦—

ପୁରୀରେ ପହଞ୍ଚି ସାମନ୍ତ ଆଗେ ଜଗନ୍ନାଥଙ୍କ ଦର୍ଶନ କଲେ ଓ ତାଙ୍କ ଆଗରେ ଠିଆ ହୋଇ ହାତ ଯୋଡ଼ି ଜଣାଇଲେ, "ପ୍ରଭୋ, ଏ ପାପୀ ଆଜି ସମ୍ମୁଖରେ ଉପସ୍ଥିତ । ଏ ଜୀବନରେ ଆଜି ମୋର ଶେଷ ଦର୍ଶନ ।" ତା ପରେ ସେ ବସାକୁ ଫେରିଲେ । ଯେଉଁଠାକୁ

ମନ୍ଦିରର ନୀଳଚକ୍ର ଦେଖାଯାଉଥିଲା, ସେହିପରି ସ୍ଥାନରେ ବସା ଠିକ୍ ହୋଇଥିଲା । ବସାରେ ପହଞ୍ଚିବା ପରେ ତାଙ୍କୁ ଜ୍ୱର ହେଲା । ସେ ଜ୍ୱର ଆଉ ଛାଡ଼ିଲା ନାହିଁ । ପୁଅ ଗଦାଧର ପାଖରେ ଥାନ୍ତି । ସାମନ୍ତ କୌଣସି ଔଷଧ ଖାଇବାକୁ ରାଜି ନଥିଲେ । ମାତ୍ର ଗଦାଧର ବାଧ୍ୟ କରିବାରୁ ରାଜି ହେଲେ । ଏହିପରି କିଛିଦିନ ଗଲା । ଦ୍ୱାଦଶୀ ଦିନ ସାମନ୍ତ କହିଲେ, "ଗଦାଧର, ତମେ ଗାଧୋଇ ପଡ଼ । ମୋତେ ପବିତ୍ର ଜଳରେ ଗାଧୋଇ ଦେଇ ସଫା କରିଦିଅ ।" ପୁଅ କହିଲେ, "ଜ୍ୱର ହେଉଛି, କେମିତି ଗାଧୋଇ ଦେବି ? " ସାମନ୍ତ କହିଲେ, "ଲୋକେ ମରିଯିବେ ବୋଲି ଜ୍ୱରକୁ ଡରନ୍ତି । ଆଜି ତ ମୋର ମୃତ୍ୟୁ ହେବ । ଜ୍ୱରକୁ ଭୟ କାହିଁକି ? ମୁଁ ଅଗାଧୁଆ ଓ ଅସଫା ହୋଇ ମରିବା କଣ ତୁମେ ଇଚ୍ଛା କର ? ତାହା ଶୁଣି ଗଦାଧର ବାପାଙ୍କୁ ତୁଳସୀ ଚଉରା ମୂଳକୁ ନେଇ ଗାଧୋଇ ଦେଲେ । ଗେରୁଆ ଲୁଗା ଖଣ୍ଡିଏ ପିନ୍ଧାଇ ଦେଲେ । ତାଙ୍କ ବେକରେ ତୁଳସୀ ମାଳ ପିନ୍ଧାଇ ଦେଇ ମୁଣ୍ଡରେ ତିଳକ ଦେଲେ । ସାମନ୍ତ ଧୀରେ ଧୀରେ 'ଜଗନ୍ନାଥ' 'ଜଗନ୍ନାଥ' କହୁଥାନ୍ତି । ଏହି ସମୟରେ ସେ ଢଳି ପଡ଼ିଲେ ଓ ତାଙ୍କ ପ୍ରାଣବାୟୁ ବାହାରି ଗଲା ।

—୧୧—

ଶିଖର ମହାପାତ୍ର ସାମନ୍ତଙ୍କର ନାପିତ ଥିଲା ଓ ସବୁବେଳେ ତାଙ୍କ ପାଖରେ ରହୁଥିଲା । ସେ ଅବଶ୍ୟ ପାଠ ପଢ଼ି ନ ଥିଲା, ମାତ୍ର ସାମନ୍ତଙ୍କ ସଙ୍ଗରେ ରହି ନାନା ଶାସ୍ତ୍ରରେ ଜ୍ଞାନ ଲାଭ କରିଥିଲା । ପୁରୀରୁ ଥରେ ଜଣେ ବଡ଼ ପଣ୍ଡିତ ଆସିଥିଲେ । ଶିଖର ତାଙ୍କୁ କ୍ଷୌର କରିବା ସମୟରେ ବେଦର ଗୋଟିଏ ଜଟିଳ କଥା ବୁଝାଇ ଦେବା ପାଇଁ ପଣ୍ଡିତଙ୍କୁ ଅନୁରୋଧ କଲା । ପଣ୍ଡିତେ

ନାପିତର କଥା ଶୁଣି କାବା ହୋଇଗଲେ ଏବଂ ପଚାରିଲେ, "କିରେ ତୁ ଏକଥା କୁଆଡ଼ୁ ଜାଣିଲୁ ?" ସେ କହିଲା, "ମୁଁ ସାମନ୍ତଙ୍କଠାରୁ ଶୁଣିଛି ।" ତହୁଁ ପଣ୍ଡିତେ କହିଲେ, "ତୁ ଯାହାଙ୍କ ପାଖରେ ଅଛୁ, ସେ ମୋଠାରୁ ବଡ ପଣ୍ଡିତ । ତାଙ୍କୁ ପଚାରିଲେ ସେ ବୁଝାଇ ଦେବେ । ମୁଁ ଆଉ ବୁଝାଇବି କଣ ?"

—୧୨—

ଶିଖର ମହାପାତ୍ର ଦିନେ ଦେଖିଲା, ନୟାଗଡର ରାଜପୁରୋହିତ ମୂଳା ନକ୍ଷତ୍ରରେ କ୍ଷୌର ହେଉଛନ୍ତି । ସେ ସାଙ୍ଗେ ସାଙ୍ଗେ କହିଲା, "ଆଜ୍ଞା ଆପଣ ଜଣେ ମହାପଣ୍ଡିତ ହୋଇ ଏପରି ଅନ୍ୟାୟ କରୁଛନ୍ତି ?" ରାଜଗୁରୁ କହିଲେ, "କିରେ, ମୁଁ କି ଅନ୍ୟାୟଟା କରୁଛି ।" ନାପିତ କହିଲା, "ଆଜ୍ଞା, ମୂଳା ନକ୍ଷତ୍ରରେ କଣ କ୍ଷୌର ହୁଅନ୍ତି ?" ରାଜଗୁରୁ ଚମକି ପଡ଼ି ପାଞ୍ଜି ଅଣାଇ ଦେଖିଲା ବେଳକୁ ସେ ଦିନ ମୂଳା ନକ୍ଷତ୍ର । ତାଙ୍କୁ ବଡ଼ ଲଜ ମାଡିଲା । ସେ ନାପିତକୁ କହିଲେ, "ମହାପାତ୍ରେ, ଏ କଥା ସାମନ୍ତଙ୍କୁ କହିବ ନାହିଁ । ସେ ଶୁଣିଲେ ମୋତେ କଅଣ ବୋଲି କଣ କହିବେ ।"

—୧୩—

ପଡ଼ୋଶୀ ବ୍ରାହ୍ମଣ ଘରେ ବିବାହ ବ୍ରତ ଇତ୍ୟାଦି ହେଲେ ସାମନ୍ତଙ୍କୁ ପିଠା ତରକାରି ଇତ୍ୟାଦି ଦିଆଯାଏ । ବ୍ରାହ୍ମଣଭୋଜନ ନ ସରିଲେ ସାମନ୍ତ ନିଜେ ଖାଆନ୍ତି ନାହିଁ । ରାତି ବାରଟା ପରେ ମହାନିଶା ହୋଇଯାଏ ବୋଲି ମଧ୍ୟ କିଛି ଭୋଜନ କରନ୍ତି ନାହିଁ । ଥରେ ଜଣେ ବ୍ରାହ୍ମଣ ପୁଅର ବ୍ରତଘର ଯୋଗୁଁ ସାମନ୍ତଙ୍କ ଘରେ ପ୍ରସାଦ ଦେଇ ଆସିଲେ । ସେତେବେଳେ ବ୍ରାହ୍ମଣମାନେ ଖାଇ ନ ଥିଲେ । ସାମନ୍ତ ତାହା ଶୁଣି କହିଲେ, "ତୁମ୍ଭେ କିଣ କଲ ?

ବ୍ରାହ୍ମଣମାନଙ୍କୁ କଣ ମୋର ଉଚ୍ଛିଷ୍ଟ ଦେବ ? ବର୍ତ୍ତମାନ ଏ ମଦ୍ଧ୍ୟ ପୋଡ଼ ଦେବାକୁ ପଡ଼ିବ ।" ଏହା କହି ସେ ଗୋଟିଏ ଗାତ ଖୋଳାଇ ଖାଦ୍ୟ ପଦାର୍ଥଗୁଡ଼ିକ ପୋଡ଼ ଦେଲେ ।

—୧୪—

ସାମନ୍ତଙ୍କର ଅବସ୍ଥା ଭଲ ନ ଥିଲା । ତଥାପି ସେ ଦରିଦ୍ର-ମାନଙ୍କୁ ଦାନ କରିବାରେ କେବେ କୁଣ୍ଠିତ ହୋଇ ନାହାନ୍ତି । ସେ ବ୍ରାହ୍ମଣମାନଙ୍କୁ ଅନେକ ଭୂମିଦାନ କରିଛନ୍ତି । କେତେକ ବ୍ରାହ୍ମଣଙ୍କୁ ସେମାନଙ୍କ ପୁତ୍ର କନ୍ୟାର ବିବାହ ବ୍ରତରେ ଯଥାଶକ୍ତି ସାହାଯ୍ୟ କରିଅଛନ୍ତି । ଥରେ ଜଣେ ବ୍ରାହ୍ମଣ ପୁଅଟିର ବ୍ରତ ପାଇଁ କିଛି ସାହାଯ୍ୟ ମାଗିବାରୁ ସେ ନିଜର ଗୋଟିଏ ପିତଳ ହାଣ୍ଡି ବନ୍ଧା ପକାଇ ତାଙ୍କୁ ତିରିଶ ଟଙ୍କା ଦେଇଥିଲେ ।

ଥରେ ନୟାଗଡ଼ର ଜଣେ ବ୍ରାହ୍ମଣ ତାଙ୍କ ଶ୍ରାଦ୍ଧ ଖରଚ ପାଇଁ ସାହାଯ୍ୟ ମାଗିଲେ । ସେ ଦିନ ସାମନ୍ତଙ୍କ ପାଖରେ କିଛି ନ ଥାଏ । ତହୁଁ ସେ ନିଜ ହାତରୁ ସୁନା ମୁଦିଟିଏ କାଢି ଗୁଳକରଙ୍କୁ ଦେଲେ ଓ ତାହାକୁ ବନ୍ଧା ପକାଇ ଦୁଇଟି ଟଙ୍କା ଆଣିବାକୁ କହିଲେ । ଟଙ୍କା ଦେବା ବାଲା ଦୁଇ ଟଙ୍କା ଦେଲା, ମାତ୍ର ବନ୍ଧା ରଖିଲା ନାହିଁ । ସାମନ୍ତ ଗୁଳକରଙ୍କୁ କହିଲେ, "ନାହିଁ ନାହିଁ, ତୁ ବନ୍ଧା ଦେଇ ଆ । ବନ୍ଧା ନ ରଖିଲେ ମୋର ଦେବା ପର ହେବ ନାହିଁ ।

—୧୫—

ନିଜର ବାଡ଼ି ବଗିଚାରେ କୌଣସି ଫଳ ନୂଆ ହୋଇ ତୋଳା ହେଲେ ସାମନ୍ତେ ପ୍ରଥମେ ଠାକୁର ଘରକୁ ଓ ପରେ ବ୍ରାହ୍ମଣଙ୍କୁ ଡ଼ାକି ଦେଉଥିଲେ । ଏହା ପରେ ଯାଇ ନିଜ ଘରେ ରନ୍ଧା ହେଉଥିଲା । ଥରେ ଜଣେ ବ୍ରାହ୍ମଣଙ୍କୁ ସେ ଦୁଇଟି ବଡ ବାଇଗଣ ଓ ଗୋଟିଏ ପଇସା ଦେଇ କହିଲେ, "ନିଅନ୍ତୁ, ଏ ବାଇଗଣକୁ ଘିଅରେ ନ

ଖାଇଲେ ଭଲ ଲାଗିବ ନାହିଁ । ଏହି ପଇସାଟି ନିଅ, ଘିଅ କିଣିବ ।” ପଇସାଟିଏ କାହିଁକି ଦିଆଗଲା ବୋଲି ଘରେ କେହି ପଚାରିବାରୁ ସାମନ୍ତ କହିଲେ, “ଆମଘରେ ଘିଅରେ ଦାଇଗଣ ଭଜା ହେବ । ନହେଲେ ତ ଗରିବ । ସେ କାହୁଁ ଘିଅ ପାଇବେ ? ସେଥିପାଇଁ ପଇସାଟି ଦେଲି ।”

—୧୬—

ପ୍ରଥମେ ପଣ୍ଡିତ ରାଜବଲ୍ଲଭ ମିଶ୍ର ଓ ସାମନ୍ତ ଦୁହେଁ ମିଶି ପାଞ୍ଜି ଲେଖୁଥିଲେ । ପାଞ୍ଜିରେ ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣର ଗଣନା ଶିଖି ନ ଥିଲେ । ଦିନେ ସାମନ୍ତଙ୍କ ସାନ ପୁଅ ଚକ୍ରଧର ପଣ୍ଡିତଙ୍କୁ ଏ ବିଷୟମାନ ଶିଖାଇ ନ ଦେବା ପାଇଁ କହିଲେ । ସାମନ୍ତ ତାହାର କାରଣ ପଚାରିବାରୁ ଚକ୍ରଧର କହିଲେ, “ମିଶ୍ରେ ତାହା ଶିଖିଗଲେ ଏକୁଟିଆ ପାଞ୍ଜି କରିପିବେ । ଆମକୁ ଆଉ ପଇସା ମିଳିବ ନାହିଁ ।” ତାହିଁ ଆରଦିନ ମିଶ୍ରେ ଆସିବାରୁ ସାମନ୍ତ କହିଲେ, “ତୁମ୍ଭଙ୍କୁ ଆଉ ପରାଗ ଓ ଗ୍ରହଣ ବିଷୟ ଶିଖାଇ ଦେବି ନାହିଁ ।” ମିଶ୍ରେ ତାହାର କାରଣ ପଚାରନ୍ତେ ଚକ୍ରଧର ଯାହା ଶିଖାଇଥିଲେ ସାମନ୍ତ ତାହାହିଁ କହିଲେ । ମିଶ୍ରେ କହିଲେ, “ଏହା ତ ତୁମ୍ଭ ତୁଣ୍ଡ କଥା ନୁହେଁ ।” ସାମନ୍ତ କହିଲେ; “ମୁଁ କଣ ଜାଣିଥିଲି । ମୋତେ ପରା ଚକ୍ରଧର କହିଲା ।” ଚକ୍ରଧର ସେଠାରେ ବସିଥିଲେ । ସେ ଲାଜରେ ପଳାଇ ଯାଇ ମାଆଙ୍କୁ ଏ କଥା କହିଲେ । ମା କହିଲେ, “ତୁ ଏ କଥା ତାଙ୍କୁ କାହିଁକି କହିଲୁ ? ସେ କଣ ପେଟରେ କିଛି ରଖନ୍ତି ?”

—୧୭—

ସାମନ୍ତ ଭାରି ବିନୟୀ ଥିଲେ । ତାଙ୍କର ଟିକିଏ ହେଲେ ଗର୍ବ ନ ଥିଲା । ପଣ୍ଡିତମାନେ ତାଙ୍କ ସହ ଶାସ୍ତ୍ର ଚର୍ଚ୍ଚା କରି

ତାଙ୍କୁ ପ୍ରଶଂସା କଲେ ସେ କହନ୍ତି—"ପୂର୍ବ କାଳରେ ଯେଉଁ ପଣ୍ଡିତମାନେ ଥିଲେ, ମୁଁ ତାଙ୍କ ତୁଳନାରେ କିଛି ନୁହେଁ। ଏ ଦେଶର ପଣ୍ଡିତମାନଙ୍କ ମଧ୍ୟରୁ ଅଧିକାଂଶ ବ୍ରାହ୍ମଣ। ମୁଁ ତ ବ୍ରାହ୍ମଣ ନୁହେଁ। ମୁଁ ଯାହା ସାମାନ୍ୟ ଜ୍ଞାନ ପାଇଛି ତାହା କେବଳ ବ୍ରାହ୍ମଣମାନଙ୍କ କଲ୍ୟାଣରୁ।"

—୧୮—

ଥରେ ଖଣ୍ଡପଡ଼ାର ରାଜା ନଟବର ସିଂହ ମଧୁବାବୁଙ୍କୁ ଆମନ୍ତ୍ରଣ କରି ଆଣି ଗଡ଼ରେ ଗୋଟିଏ ସଭା କରିଥିଲେ। ସଭାରେ ଅନେକ କବି ଓ ପଣ୍ଡିତ ଉପସ୍ଥିତ ଥିଲେ। ମଧୁବାବୁ କଥା ପ୍ରସଙ୍ଗରେ ଗୋଟିଏ ଗପ କହିଲେ—

"ଜଣେ ବ୍ରାହ୍ମଣ ପଣ୍ଡିତ ଥିଲେ। ତାଙ୍କ ସ୍ତ୍ରୀ ଚୁଲିରେ ଡାଲି ବସାଇ ଦେଇ ପାଣି ଆଣିବା ପାଇଁ ବାହାରକୁ ଗଲେ। ସେ ଗଲାବେଳେ ସ୍ୱାମୀଙ୍କୁ କହିଗଲେ ଯେ, ଡାଲି କାଲେ ଉତୁରି ପଡ଼ିବ ସେଥିପାଇଁ ଦୃଷ୍ଟି ଥିବ। ପ୍ରକୃତରେ ଡାଲି ଉତୁରି ପଡ଼ିଲା। ପଣ୍ଡିତେ କିଛି ଉପାୟ ନ ପାଇ ଚଣ୍ଡୀପାଠ କରି ବସିଲେ, ମାତ୍ର ଚଣ୍ଡୀପାଠରେ କଣ ଡାଲି ଉତୁରା ବନ୍ଦ ହେବ? ଡାଲି ଉତୁରି ଉତୁରି ଚୁଲି ଲିଭିଗଲା। ସ୍ତ୍ରୀ ଆସି ତାହା ଦେଖି ହାଣ୍ଡିରେ ମୁନ୍ଦାଏ ପାଣି ପକାଇ ଦେଲେ ଓ ଜାଳ କାଢ଼ି ଆଣିଲେ। ଏହା ଦେଖି ପଣ୍ଡିତେ ଆଶ୍ଚର୍ଯ୍ୟ ହୋଇ କହିଲେ, "ତୁ କି ମନ୍ତ୍ର ପଢ଼ି ପାଣି ପକାଇ ଦେଲୁ ଯେ ଉତୁରା ସାଙ୍ଗେ ସାଙ୍ଗେ ବନ୍ଦ ହୋଇଗଲା, ମାତ୍ର ମୁଁ ଏତେ ଚଣ୍ଡୀ ପଢ଼ା କିଛି ହେଲା ନାହିଁ।"

ମଧୁବାବୁ ଗପଟି କହିସାରି କହିଲେ, "ପଣ୍ଡିତମାନେ ସିନା ବହୁତ ପାଠ ପଢ଼ିଥାନ୍ତି, ମାତ୍ର ସେମାନଙ୍କର ବୁଦ୍ଧି ନ ଥାଏ।"

ସଭାରେ ଥିବା ଲୋକମାନେ ଏହା ଶୁଣି ନୀରବ ରହିଲେ । ମଧୁବାବୁ ଜଟିଳ ନାମଜାଦା ହେଲେ । ତାଙ୍କ ଆଗରେ କଥା କହିବାକୁ ସାହସ କାହାର ଅଛି ? ମାତ୍ର ଚନ୍ଦ୍ରଶେଖର ପଣ୍ଡିତମାନଙ୍କର ପୁଣି ବ୍ରାହ୍ମଣମାନଙ୍କର ନିନ୍ଦା ସହି ପାରିଲେ ନାହିଁ । ସେ ସଙ୍ଗେ ସଙ୍ଗେ ଏହି ଶ୍ଲୋକଟି ପଢ଼ିଲେ ।

ଧୀରୋଽପ୍ୟ ଧୀନ୍ଦ୍ରୀକୃତ ଧୀରବର୍ଗୋ
ମୂଢ଼ାତ୍ ପରାଭୂତ ମବଶ୍ୟ ମେତ
ହୀରୋଽପି ନୀଳପ୍ରଭମାଶୁ ଲୋହା
ମେଷସ୍ୟ ଶୃଙ୍ଗାଦପି ଯାତ ଭଙ୍ଗମ୍ ॥

ଅର୍ଥାତ୍ ପଥର ଓ ଲୁହାକୁ ପାଣି ଫଟାଇ ଦେଉଥିବା ହୀରା ମଧ୍ୟ ମେଣ୍ଢା ଶିଙ୍ଗରେ ଭାଙ୍ଗିଯାଏ । ସେହିପରି ଅନେକ ପଣ୍ଡିତଙ୍କୁ ପରାସ୍ତ କରିଥିବା ମହାପଣ୍ଡିତ ମଧ୍ୟ ମୂର୍ଖ ପାଖରେ ପରାସ୍ତ ହୁଏ ।

ଏହା ଶୁଣି ମଧୁବାବୁ ମୁହଁ କଳା ପଡ଼ି ଗଲା । ସମସ୍ତେ ଭାବିଲେ—ଏ ପ୍ରତାପୀ ରାଜା ଓ ମଧୁବାବୁ ରାଗ ରଖି ସାମନ୍ତଙ୍କର ନିଶ୍ଚୟ କ୍ଷତି କରିବେ । ମାତ୍ର ସାମନ୍ତଙ୍କର ଲେଶ ମାତ୍ର ଭୟ ନ ଥାଏ । ତହିଁ ଆରଦିନ ମଧୁବାବୁ ସାମନ୍ତଙ୍କ ଘରକୁ ଯାଇ କହିଲେ, "କାଲି ମୁଁ ଆପଣଙ୍କ ମନରେ ବଡ଼ କଷ୍ଟ ଦେଲି ମାତ୍ର ମୁଁ ଆପଣଙ୍କୁ କହିନାହିଁ । ଆପଣ ତ ଉତ୍କଳର ଚନ୍ଦ୍ରମା ।" ସାମନ୍ତ କହିଲେ, "ମୋ ମନରେ କିଛି କଷ୍ଟ ହୋଇନାହିଁ । ମୁଁ ମଧ୍ୟ ଆପଣଙ୍କୁ ମୂର୍ଖ କହି ଆପଣଙ୍କ ମନରେ କଷ୍ଟ ଦେଇଛି । ସବୁ ଭୁଲିଯାନ୍ତୁ ।"

—୧୯—

ଥରେ ଓଡ଼ିଶାର କମିସନର ସାହେବ ସାମନ୍ତଙ୍କ ସହ ଦେଖା କରିବାକୁ ତାଙ୍କ ଘରେ ପହଞ୍ଚିଲେ । ସେତେବେଳେ ସାମନ୍ତ ଧାଈଙ୍କ ଘରେ ବସି ଗପ କରୁଥିଲେ । ଖବର ପାଇ ସେ ପୁଅଙ୍କୁ କହିଲେ, "ମୋର ନିତ୍ୟକର୍ମ ନ ସରିଲେ ମୁଁ ଉଠି ପାରିବି ନାହିଁ । ଆଉ ଅଧ ଘଣ୍ଟା ଲାଗିବ । ସାହେବଙ୍କୁ କହ; ଯେବେ ଅଧଘଣ୍ଟା ଅପେକ୍ଷା କରିବେ, ତେବେ ମୁଁ ଦେଖା କରିବି । ନଚେତ୍ ସେ ଯାଆନ୍ତୁ, ମୁଁ ନିତ୍ୟକର୍ମ ସାରି ତାଙ୍କ ବସାକୁ ଯାଇ ଦେଖା କରିବି ।" ଏହା ଶୁଣି ସାହେବ ଅପେକ୍ଷା କଲେ ଓ ତାଙ୍କ ପୁଅମାନଙ୍କ ସହିତ ଗପ କରିବାକୁ ଲାଗିଲେ ।

---

କର୍ମବୀର

# ଗୌରୀଶଙ୍କର ରାୟ

ଜନ୍ମ—ଜୁଲାଇ ୧୮୩୮ ମୃତ୍ୟୁ—୮ ମାର୍ଚ୍ଚ ୧୯୧୭

ଗୌରୀଶଙ୍କର ସଦାଶିବ ପ୍ରସାଦ ରାୟଙ୍କ ପୁତ୍ର। ତାଙ୍କ ମାତାଙ୍କ ନାମ ଅନ୍ନପୂର୍ଣ୍ଣା। କଟକ ଜିଲାର ଦୀକ୍ଷିତ ପଡ଼ା ଗ୍ରାମରେ ତାଙ୍କର ଜନ୍ମ। ସେ ଏଫ୍,ଏ, ପର୍ଯ୍ୟନ୍ତ ପଢିଥିଲେ। ପ୍ରଥମେ ସେ କଟକ କଲେକ୍ଟରୀ କଚେରୀରେ



କୋଡ଼ିଏ ଟଙ୍କା ଦରମାରେ କିରାଣୀ ହେଲେ। ସେ ଭାରି ସଚ୍ଚୋଟ ମଣିଷ ଥିଲେ। ତାଙ୍କ ଗୁଣରେ ଖୁସି ହୋଇ ତାଙ୍କ ଉପର ହାକମ ଗୋଟିଏ ବଡ଼ ଗୁରୁକର୍ମ ଦେଇ-

ଥିଲେ । ସେଥିରେ ସେ ମାସକୁ ଶହେ ଟଙ୍କା ପାଉଥିଲେ । ତାଙ୍କୁ ସରକାରଙ୍କଠାରୁ 'ରାୟ ବାହାଦୁର' ଉପାଧି ମିଳିଥିଲା ।

ସେତେବେଳେ ଓଡ଼ିଶା ବଙ୍ଗ ପ୍ରଦେଶ ଅଧୀନରେ ଥିଲା । ବଙ୍ଗାଳୀମାନେ ଓଡ଼ିଶାର ସାନ ବଡ ସବୁ ପ୍ରକାର ଚାକିରିରେ ଗାଦି ମାଡ଼ି ବସିଥିଲେ । ସେମାନେ କହୁଥିଲେ ଓଡ଼ିଶା ଗୋଟିଏ ଗରିବ ଦେଶ ଏବଂ ଓଡ଼ିଆମାନେ ଅଶିକ୍ଷିତ । ଏଣୁ ଏ ଓଡ଼ିଶାରୁ ଓଡ଼ିଆ ଭାଷା ଉଠାଇ ଦିଆଯାଉ ଓ ତାହା ଜାଗାରେ ବଙ୍ଗଳା ଭାଷା ଚଳୁ । ଗୌରୀଶଙ୍କର ବଙ୍ଗାଳୀ ହେଲେହେଁ ଏକଥା ସହିପାରିଲେ ନାହିଁ । ଯେଉଁ ଓଡ଼ିଶାର ଅନ୍ନ ଖାଇ ଓ ପାଣିପିଇ ସେ ମଣିଷ ହୋଇଛନ୍ତି, ତାହାର ଅପମାନ କେମିତି ସହନ୍ତେ ? ସେ କଟକରେ ଗୋଟିଏ ଛାପାଖାନା ବସାଇଲେ ଓ 'ଉତ୍କଳ ଦୀପିକା' ନାମରେ ଗୋଟିଏ ପତ୍ରିକା ବାହାର କଲେ । ସେଥିରେ ସେ ନାନା ପ୍ରମାଣ ଦେଇ ଲେଖିଲେ—ଓଡ଼ିଶା ଗୋଟିଏ ବହୁ କାଳର ଦେଶ ଓ ଓଡ଼ିଆ ଭାଷାର ସ୍ଥାନ ବଙ୍ଗଳାଠାରୁ ଉଚ୍ଚରେ । ସାରା ଓଡ଼ିଶାରେ ଆନ୍ଦୋଳନ ଲାଗିଲା । ଶେଷକୁ ତାଙ୍କର ଜୟ ହେଲା । ତାଙ୍କର ଯୋଗୁଁ ଓଡ଼ିଆ ଭାଷା ବଞ୍ଚି ରହିଲା । ଓଡ଼ିଶାର ଭଲ ପାଇଁ ସେ ଜୀବନସାରା ଚେଷ୍ଟା କରିଛନ୍ତି ।

ସେ ଭାରି ସାହସୀ ଥିଲେ । ସତ କହିବାକୁ ଡରୁ ନ ଥିଲେ । ସେ ଭଲ କାମ ପାଇଁ ହଜାର ହଜାର ଟଙ୍କା ଦାନ କରିଛନ୍ତି ।

— ୧ —

ଗୌରୀଶଙ୍କର କରାଣୀ କାମ କରୁଥିବା ବେଳେ ଅଜକାଲି ପରି ଡାକଘର ନ ଥିଲା । କଲେକ୍‌ଟରୀ କଚେରୀ ଜରିଅରେ ମନିଅଡ଼ର ପଠାଯାଉଥିଲା । ସେହି କାର୍ଯ୍ୟର ଭାର ତାଙ୍କ ଉପରେ ଥିଲା । ଦିନେ ତାଙ୍କର ଉଣେ ଉପର ହାକିମ ଅର୍ମିଷ୍ଟ୍ରଙ୍ଗ ସାହେବ ତିନିଟା ବାଜିବା ପରେ ତପରିସି ହାତରେ ନିଜର ଗୋଟିଏ ମନିଅଡ଼ର ପଠାଇଲେ । ତିନିଟା ବେଳକୁ ସେ କାମ ସରିଯାଏ । ତେଣୁ ଗୌରୀଶଙ୍କର ହାକିମ ବୋଲି ମୁଁହ ଚାହିଁ ନ ରଖି କହି ପଠାଇଲେ, "ତିନିଟା ବାଜିଗଲାଣି ; ଆଜି ମନିଅଡର ନିଆଯାଇ ପାରିବ ନାହିଁ ।" ତାହା ଶୁଣି ହାକିମ ଗରମ ହୋଇଗଲେ ଏବଂ କହି ପଠାଇଲେ, "ଆମ ହୁକୁମରେ ଶୀଘ୍ର କରିଦିଅ ।" କିନ୍ତୁ ଗୌରୀଶଙ୍କର ସେଥିରେ ଡ଼ରି ନ ଯାଇ ଜଣାଇଲେ, "ମୁଁ କରିପାରିବି ନାହିଁ । ଅପଣ ନିଜେ ଆସି ହିସାବ କଟାକଟି କରି ମନିଅଡ଼ର କରି ପାରନ୍ତି ।" ସାହେବଙ୍କର ରାଗର ସୀମା ରହିଲା ନାହିଁ । ସେ ନିଜେ ଆସି ତାଙ୍କ ପାଖରେ ପହଞ୍ଚିଲେ । ଗୌରୀଶଙ୍କର ତାଙ୍କୁ ମନିଅଡ଼ର ହିସାବ ଖାତା ବଢ଼େଇଦେଲେ । ସାହେବ ଖାତା କଟାକଟି କରି ନିଜ କାମ କରିଦେଇ ଚାଲିଗଲେ । ଗୌରୀଶଙ୍କର ସଙ୍ଗେ ସଙ୍ଗେ ଏ କଥା ସରକାରଙ୍କୁ ଜଣାଇ ଦେଲେ । ତାହା ଦ୍ୱାରା ସାହେବଙ୍କ ଅନ୍ୟାୟ କାର୍ଯ୍ୟ ପଦାରେ ପଡ଼ି ଯାଇଥିଲା ।

— ୨ —

ସେହି ଅର୍ମିଷ୍ଟ୍ରଙ୍ଗ ସାହେବ ସେତେବେଳେ ସବ୍‌ରେଜିଷ୍ଟ୍ରର କାମ ତୁଲାଉଥିଲେ । ଜମି ଖରିଦ ବିକ୍ରୀ ପାଇଁ ସବ୍‌ରେଜିଷ୍ଟ୍ରୀ ଅଫିସ ଅଲଗା ନ ଥିଲା । ତାଙ୍କ ଅମଳରେ ଲୋକମାନେ ଦଲିଲ ଦସ୍ତାବିଜ ପାଇବାରେ ଭାରି ହଇରାଣ ହେଉଥିଲେ । ବିଲମ୍ବର କାରଣ

ଦାଉଡ଼ ଖର୍ଚ୍ଚାନ୍ତ ହେବାକୁ ପଡୁଥିଲା । ଗୌରୀଶଙ୍କର ଏହି କଥା 'ଦୀପିକା' ଖବର କାଗଜରେ ଲେଖିଲେ । ସାହେବ ଖବରକାଗଜରୁ ନିଜର ନିନ୍ଦା ଶୁଣିପାରିଲେ । ସେ ରାଗରେ କର୍ମଚାରୀଙ୍କ ଭିତରୁ କାହାକୁ ଚାକିରିରୁ ବରଖାସ୍ତ କରିଦେଲେ ଏବଂ କାହାକୁ ଜୋରିମାନା କଲେ । ଶେଷରେ ଗୌରୀଶଙ୍କରଙ୍କୁ ପାଖକୁ ଡ଼କାଇଲେ । ଏହା ଶୁଣି ଅମଲମାନେ ଭୟରେ ଥରହର । କିନ୍ତୁ ଗୌରୀଶଙ୍କର ଲେଶ ମାତ୍ର ଭୟ ନ କରି ତାଙ୍କ ପାଖରେ ପହଞ୍ଚିଲେ । ସାହେବ ତାଙ୍କୁ ଦେଖିବା ମାତ୍ରେ ହଠାତ୍ ଆସନରୁ ଉଠିଆସିଲେ ଓ କହିଲେ, "ତୁମେ ଅମ ସହିତ ଶୀଘ୍ର ରଫା କର । ନଚେତ୍ ତୁମ ବିରୁଦ୍ଧରେ ରିପୋର୍ଟ ପଠାଇ ତୁମର ସର୍ବନାଶ କରିବି ।" ଗୌରୀଶଙ୍କର ସାହସ ଧରି କହିଲେ, "ମୁଁ ତ କିଛି କଳିଗୋଳ କରୁନାହିଁ । କି ରଫା କରିବି ? ଯାହା ନିଜ ଆଖିରେ ଦେଖିଲି, ଲୋକଙ୍କ ହିତ ପାଇଁ ତାହାହିଁ ଲେଖିଲି । ମୋ ଲେଖାରେ ପଦେ ହେଲେ ମିଛ ନାହିଁ ।"

ସାହେବ—ତାହେଲେ ତୁମେ ଏଥର ଖବର କାଗଜରେ ପୁଣି ଲେଖିଦଅ ଯେ, ରେଜେଷ୍ଟ୍ରି ଅଫିସରୁ ସବୁ ଦୋଷ ଦୂର ହୋଇଯାଇଛି । କୌଣସି କାର୍ଯ୍ୟ ବାକି ପଡ଼ୁନାହିଁ ।

ଗୌରୀଶଙ୍କର—ମୁଁ ଯଦି ଦେଖିବି ଯେ ଲୋକମାନଙ୍କର ଆଉ ଅସୁବିଧା ହେଉନାହିଁ ତେବେ ଯାଇ ଲେଖିବି ।

ସାହେବ ଜାଣିଲେ, ଗୌରୀଶଙ୍କର ଜଣେ ସାଧାରଣ ଲୋକ ନୁହନ୍ତି, ତେଣୁ ତାଙ୍କର ଆଉ ମୁହଁ ଖୋଲିବାକୁ ସାହସ ହେଲା ନାହିଁ ।

—୩—

କଟକରେ ଦୀନାନାଥ ବନ୍ଦ୍ୟୋପାଧ୍ୟାୟ ନାମରେ ଜଣେ ଲୋକ ଥିଲେ । କେହି ତାହା ପ୍ରତି ଅତ୍ୟାଚାର କଲେ ସେ ସହି ପାରନ୍ତି

ନାହିଁ, ସଙ୍ଗେ ସଙ୍ଗେ ସରକାରଙ୍କୁ ଜଣାଇ ଦିଅନ୍ତି । ସେ ଥରେ କଟକର ଜଣେ ବଡ଼ ଜମିଦାରଙ୍କ ବିରୁଦ୍ଧରେ କେତେକ କଥା ଲେଖି ମାଜିଷ୍ଟ୍ରେଟଙ୍କୁ ଜଣାଇଲେ । ମାଜିଷ୍ଟ୍ରେଟ ଥିଲେ ଜନ ବିମ୍ସ ସାହେବ । ଦୀନାନାଥ ସରକାରୀ କର୍ମଚାରୀଙ୍କ ଅନ୍ୟାୟ କଥା ମଧ୍ୟ ପଦାରେ ପକାଇ ଦିଅନ୍ତି । ତେଣୁ ସେମାନେ ଦୀନାନାଥଙ୍କୁ ଦେଖିପାରନ୍ତି ନାହିଁ । ସେହି ଜମିଦାରଙ୍କ ପୁଅ ବିମସ୍ ସାହେବଙ୍କ ଅଧୀନରେ ଚାକିରୀ କରୁଥାନ୍ତି । ସାହେବ ତାଙ୍କୁ ଶିଖାଇ ଦୀନାନାଥଙ୍କ ନାମରେ ଗୋଟିଏ ମାନହାନୀ ମକଦ୍ଦମା ଦାଏର କଲେ । ସାହେବ ମଧ୍ୟ ସେହି ମକଦ୍ଦମା ବିଚାର କଲେ । ଫଳରେ ଦୀନାନାଥଙ୍କୁ ଦୁଇ ବର୍ଷ ଜେଲ ଦଣ୍ଡ ମିଳିଲା । ସେ ଅଦାଲତରେ ଅପିଲ କରିବାକୁ ଚାହାଁଲେ । ସେଥିରେ ଜାମିନ୍‌ଦାର ଦରକାର । ବିମ୍ସ ସାହେବଙ୍କ ପ୍ରତାପ କାହିଁରେ କଅଣ । ତାଙ୍କ ଭୟରେ କଟକ ସହର ଭିତରୁ କେହିହେଲେ ଜାମିନ୍ ହେବାକୁ ରାଜି ହେଲେ ନାହିଁ । କଚେରୀର ଅମଲାମାନେ ହାକିମଙ୍କ ନା ଶୁଣିଲେ ଶୁଖିଯାନ୍ତି । ତାଙ୍କର ସାହସ କେତେ ! ଗୌରୀଶଙ୍କର ଦେଖିଲେ, ଜଣେ ଲୋକ ବିନା ଦୋଷରେ ଦଣ୍ଡ ପାଉଛନ୍ତି । ସେ କେମିତି ଚୁପ୍ ହୋଇ ବସିବେ ? ସେ ଜଜ୍ ସାହେବଙ୍କ ପାଖକୁ ଗଲେ ଓ ତାଙ୍କ ପାଇଁ ଜାମିନ୍ ହେବାକୁ ଜଣାଇଲେ । ମକଦ୍ଦମା ଚାଲିଲା । ଫଳରେ ଦୀନାନାଥ ଜେଲ୍ ଦଣ୍ଡରୁ ଖଲାସ ପାଇଲେ ।

— ୪ —

ବିମ୍ସ ସାହେବ ଶୁଣିଲେ, ଦୀନାନାଥ ଅଦାଲତ ବିଚାରରେ ଖଲାସ ହୋଇଛନ୍ତି । ସେତେବେଳେ ସେ ପାଖ ଲୋକଙ୍କୁ କହୁଥିଲେ, "ଏ ସହରରେ ଗୌରୀଶଙ୍କର ପ୍ରକୃତରେ ଜଣେ ଲୋକ ।" ଅଳ୍ପ

କାଳ ପରେ ତାଙ୍କର କଟକରୁ ବଦଳି ହୋଇଯିବାର ଆଦେଶ ଆସିଲା । ଯିବା ପୂର୍ବରୁ ସେ ଗୌରୀଶଙ୍କରଙ୍କୁ ଡକାଇ କହିଲେ, "ମୁଁ ଏଠାରୁ ଚାଲିଯାଉଛି । ଏ କଥା ଶୁଣି ତୁମେ ନିଶ୍ଚୟ ଖୁସି ହେବ ।" ବମ୍ସ ସାହେବ ଜଣେ ଭଲ ଲୋକ ଥିଲେ । ସେ ଓଡ଼ିଶା ଓ ଓଡ଼ିଆ ଭାଷା ପାଇଁ ଅନେକ ଭଲ କାମ କରିଥିଲେ । ସେ ଗୁଣୀ ଲୋକଙ୍କୁ ଚିହ୍ନି ତାଙ୍କୁ ଆଦର କରୁଥିଲେ । ତେଣୁ ଗୌରୀଶଙ୍କର କହିଲେ, "ସାହେବ, ଆପଣଙ୍କ ଭଳି ମାଜିଷ୍ଟ୍ରେଟ ଆମକୁ ଆଉ ମିଳିବେ ନାହିଁ । ଆପଣ ଏଠାରୁ ଚାଲିଯାଉଥିବାରୁ ମୋ ମନରେ କେତେ କଷ୍ଟ ହେଉଛି ତାହା ମୁଁ କେବଳ ଜାଣେ ।"

—୫—

ଗୌରୀଶଙ୍କର ନିଜ ପାଇଁ ବେଶୀ ଖରଚ କରୁ ନ ଥିଲେ । ପର ପାଇଁ ସେ ଟଙ୍କା ସଞ୍ଚୟ କରୁଥିଲେ । ତେଣୁ ସେ ନିଜ ଜୀବନରେ ଅନେକ ମହତ କାର୍ଯ୍ୟ କରି ଯାଇଛନ୍ତି ।

କଟକ ସହରରେ ସଭା ସମିତି କରିବା ପାଇଁ ଉପଯୁକ୍ତ ଘର ନ ଥିଲା । ତେଣୁ ସେ ସେଠାରେ 'ଟାଉନ ହଲ' ନାମରେ ଗୋଟିଏ ବଡ଼ କୋଠା ତିଆରି କରିଥିଲେ । ଏହା ତାଙ୍କର ପ୍ରଥମ ଓ ପ୍ରଧାନ କୀର୍ତ୍ତି । ଏଥିରେ ତାଙ୍କର ଏଗାର ହଜାର ଟଙ୍କା ଖରଚ ହୋଇଥିଲା ।

ସେ ଜାତିରେ କାୟସ୍ଥ ଥିଲେ । କାୟସ୍ଥ ଛାତ୍ରମାନଙ୍କର ସୁବିଧା ପାଇଁ କଟକର କାଠଗଡ଼ା ସାହିରେ ସେ 'କାୟସ୍ଥ ଛାତ୍ରାବାସ' ତିଆରି କରିଥିଲେ । ଏଥିପାଇଁ ତାଙ୍କୁ ଚଉଦ ହଜାର ଟଙ୍କା ଦାନ କରିବାକୁ ପଡ଼ିଥିଲା । ଛାତ୍ରାବାସ ସବୁ ଦିନେ ଭଲ ଭାବରେ ଚାଲିବା ପାଇଁ ସେ ସ୍ଥାୟୀ ବୃତ୍ତି ଖଞ୍ଜି ଦେଇ ଅଛନ୍ତି ।

ଜନ୍ମସ୍ଥାନ ଦାଷିତପଡ଼ାରେ । ସେ ଗୋଟିଏ ବାଳିକା ବିଦ୍ୟାଳୟ ଓ ଗୋଟିଏ ଡାକ୍ତରଖାନା ବସାଇଅଛନ୍ତି । ଏହି

ଦୁଇଟିର ଘର ତିଆରିରେ ସାତ ହଜାର ଟଙ୍କା ଲଗିଛି । ସେ ବ୍ୟାଙ୍କରେ ବିଦ୍ୟାଳୟ ପାଇଁ ତିନି ହଜାର ଓ ଡାକ୍ତରଖାନା ପାଇଁ ସାତ ହଜାର ଟଙ୍କା ଜମା କରିଛନ୍ତି । ସେହି ଜମା ଟଙ୍କାର ସୁଧରେ ଏହି କୀର୍ତ୍ତି ଦୁଇଟିର କାର୍ଯ୍ୟ ସୁନ୍ଦର ଭାବରେ ଚଳୁଛି ।

ଏହା ଛଡ଼ା ତାଙ୍କର ଛୋଟ ଛୋଟ ଦାନର ସୀମା ନାହିଁ । କେତେ ଗରିବ ଲୋକ ତାଙ୍କଠାରୁ ଟଙ୍କା ଓ ବହି ସାହାଯ୍ୟ ପାଇଅଛନ୍ତି । ସେ କେତେ କୂଅ ଖୋଳାଇଅଛନ୍ତି, କେତେ ପୁରୁଣା ପୋଖରୀର ପଙ୍କ କଢ଼ାଇ ତାହାକୁ ସୁନ୍ଦର କରିଅଛନ୍ତି ଓ ଭଙ୍ଗା ଦେଉଳ ମରାମତି କରିଅଛନ୍ତି । ଶ୍ମଶାନ ଓ ରାସ୍ତା ପାଖରେ ଗଛ ଲଗାଇବାକୁ ସେ ଭଲ ପାଉଥିଲେ ।

—୬—

ଥରେ ଜଣେ ସନ୍ନ୍ୟାସୀ ତାଙ୍କ ପାଖରେ ପହଞ୍ଚି କହିଲେ, "ସ୍ୱପ୍ନରେ ପ୍ରଭୁଙ୍କ ଆଦେଶ ପାଇ ବହୁ ମାଟି ଖୋଳାଇ ମୁଁ ଗୋଟିଏ ମୂର୍ତ୍ତି ପାଇଛି । ଗୋଟିଏ ନୂଆ ମନ୍ଦିର ତୋଳାଇ ତହିଁରେ ମୂର୍ତ୍ତି ରଖିବାକୁ ହେବ । ମୋତେ କିଛି ଚାନ୍ଦା ଦିଅନ୍ତୁ ।" ଗୌରୀଶଙ୍କର କହିଲେ, "ଆମ ଦେଶରେ କେତେ ମନ୍ଦିର ଓ ମଠବାଡ଼ି ଭାଙ୍ଗି ଛାରଖାର ହୋଇଯାଉଛି । ସେଗୁଡ଼ିକ ମରାମତି କରି ହେଉନାହିଁ । ଏପରି ସ୍ଥଳେ ନୂଆ ମନ୍ଦିର ତୋଳିବାକୁ ଯିବା ଉଚିତ ନୁହେଁ । ଆପଣ ସେ ମୂର୍ତ୍ତିକୁ କୌଣସି ଦେଉଳ ବା ମଠ ବାଡିରେ ରଖିବାର ବ୍ୟବସ୍ଥା କରନ୍ତୁ । ମୁଁ ନୂଆ ମନ୍ଦିର ତୋଳିବା ପାଇଁ ଚାନ୍ଦା ଦେବାକୁ ରାଜି ନୁହେଁ ।"

—୭—

ତାଙ୍କ ଗ୍ରାମ ପାଖରେ ଗୋଟିଏ ସ୍ଥାନରେ 'ବ୍ରହ୍ମୀକୁଣ୍ଡ' ନାଇଁ ଅନେକ ଦିନରୁ ଗୋଟିଏ ଘାଇ ହୋଇଥିଲା । କେତେକ୍ଷଣ ଯିବା

ଆସିବାରେ ବଡ଼ ଅସୁବିଧା ଭୋଗୁଥିଲେ । ଗୌରୀଶଙ୍କର ସେଠାରେ ଗୋଟିଏ ପକ୍କା ପୋଲ କରିବାକୁ ଇଚ୍ଛା କଲେ । ମାତ୍ର ସେ ସ୍ଥାନର ଜମି ମାଲିକ ପୋଲ କରିବାକୁ ଅନୁମତି ଦେଲେ ନାହିଁ । ଗୌରୀଶଙ୍କର ସତ୍କାର୍ଯ୍ୟରେ କାହାରିକୁ ଡରିବାର ଲୋକ ନୁହନ୍ତି । ତାଙ୍କର ପଛକେ ଯାହା ଇଚ୍ଛା ତାହା ହେଉ, ଲୋକମାନଙ୍କର ଅସୁବିଧା ଦୂର କରିବାକୁ ହେବ । ସେ ବଳପୂର୍ବକ ପୋଲ କାର୍ଯ୍ୟ ଆରମ୍ଭ କଲେ । ଜମିର ମାଲିକ ତାଙ୍କୁ ବାଦ ଦେଇ ଅନ୍ୟମାନଙ୍କ ନାମରେ ଫୌଜଦାରି ମକଦ୍ଦମା କଲେ । ବିଚାରରେ ସମସ୍ତଙ୍କୁ ଜେଲ ଦଣ୍ଡ ମିଳିଲା । ଗୌରୀଶଙ୍କର ଅପିଲ୍ ଦାଏର କଲେ । ସମସ୍ତେ ଖଲାସ ହୋଇଗଲେ ।



କଟକରେ ଯଜ୍ଞେଶ୍ୱରଚନ୍ଦ୍ର ନାମରେ ଜଣେ ପ୍ରସିଦ୍ଧ ଓକିଲ ଥିଲେ । ତାଙ୍କ ପାଖରେ ପନ୍ଦର ହଜାର ଟଙ୍କାର ବହି ଥିଲା । ଗୌରୀଶଙ୍କର 'ଟାଉନ ହଲ' ତିଆରି କରିବା ବେଳେ ସେ ତାଙ୍କର ସମସ୍ତ ବହି ସାଧାରଣଙ୍କ ପାଇଁ ଦାନ କରିଦେବେ ଓ ତାହା ଟାଉନ ହଲରେ ରହିବ ବୋଲି ଯବାବ ଦେଇଥିଲେ । କୋଠା ତିଆରି ସରିବା ପରେ ସେ କହିଲେ, "ଆମ ଦୁଇଭାଇଙ୍କର ମାଆଙ୍କ ନାମ ଅନ୍ନପୂର୍ଣ୍ଣା । ତେଣୁ ଟାଉନ ହଲ ବଦଳରେ ଅନ୍ନପୂର୍ଣ୍ଣା ହଲ ନାମ ଦିଆଯାଉ ।" ଗୌରୀଶଙ୍କର ସେଥିରେ ରାଜି ନ ହୋଇ କହିଲେ, "ଏହି ହଲଟି ସମସ୍ତଙ୍କ ଉପକାର ପାଇଁ କରାଗଲା । ଏଥିରେ ଆମ ମାଆଙ୍କ ନାମ ଦିଆଗଲେ ଅଧର୍ମ ହେବ ବୋଲି ମୁଁ ବିଚାରୁଛି । ବରଂ ତୁମେ ବହି ନ ଦେବ, କିନ୍ତୁ ମୁଁ ମୋର ଝିଅର ନାମ ଏଥିରେ ରଖିବ ନାହିଁ ।" ଯଜ୍ଞେଶ୍ୱର ବାବୁଙ୍କର ଦାନ [illegible] ନୋହିଲା ।

—୯—

ଗୌରୀଶଙ୍କର ହଜାର ହଜାର ଟଙ୍କା ରୋଜଗାର କରୁଥିଲେ । ତାଙ୍କର ଟିକିଏ ହେଲେ ବଳାପି ନ ଥିଲା । ସେ ନିଜର ସୁଖ ସୁବିଧାକୁ ଗ୍ରାହ୍ୟ ନ ଥିଲେ । ନିଜ ଦେଶର, ନିଜ ଗ୍ରାମର ଓ ନିଜ ଜାତିର ମଙ୍ଗଳ କଥା ସବୁବେଳେ ତାଙ୍କ ମନ ଭିତରେ ଖେଳୁଥିଲା । ନିଜ ଜମିରୁ ମିଳୁଥିବା ମୋଟା ଚାଉଳର ଭାତ ସେ ଅତି ଆଦରରେ ଖାଉଥିଲେ । ମୋଟା ଦେଶୀ ଲୁଗା, ଭଙ୍ଗା ଛତା ଖଣ୍ଡିଏ ଓ ପୁରୁଣା କାଳିଆ ଗାମଛା ମାନ ତାଙ୍କର ଅତି ପ୍ରିୟ ଥିଲା । ସେ କ୍ୱଚିତ ଘୋଡ଼ାରେ ଯିବା ଆସିବା କରୁଥିଲେ ।

—୧୦—

କାୟସ୍ଥମାନେ ପଇତା ପିନ୍ଧିବା ଉଚିତ ବୋଲି ବଙ୍ଗଦେଶରେ ଗୋଟିଏ ଆନ୍ଦୋଳନ ଲାଗିଲା । ଗୌରୀଶଙ୍କର ଓଡ଼ିଶାର କାୟସ୍ଥ-ମାନଙ୍କ ଏଥିରେ କରି ପରାମର୍ଶ ଚଳାଇଲେ । ଅନେକେ ପଇତା ପିନ୍ଧିବାକୁ ରାଜି ହେଲେ । କିଛିଦିନ ପରେ ଗୌରୀଶଙ୍କର ଓ ତାଙ୍କ କୁଟୁମ୍ବର ସମସ୍ତେ ଶାସ୍ତ୍ର ଅନୁସାରେ ପ୍ରାୟଶ୍ଚିତ କରି ପଇତା ପିନ୍ଧିଲେ । ଏଥିରେ ସାରା ଓଡ଼ିଶାରେ ଚହଳ ପଡ଼ିଗଲା । ଯେଉଁ-ମାନେ ପଇତା ପିନ୍ଧିବାକୁ ରାଜି ହୋଇଥିଲେ, ସେମାନେ ସମାଜକୁ ଡର କରି ରହିଲେ । କାୟସ୍ଥମାନେ ଏକାଠି ମିଳି ଗୋଟିଏ ସଭା କଲେ ଓ ତହିଁରେ ଗୌରୀଶଙ୍କରଙ୍କୁ ଅଟକ କରିବା ସ୍ଥିର କଲେ । ତାଙ୍କୁ କୁହାଗଲା, ଯଦି ସେ ନିଜର ଦୋଷ ମାନିଯାଇ ପ୍ରାୟଶ୍ଚିତ କରିବେ ଓ ପଇତା ବାହାର କରିଦେବେ, ତେବେ ତାଙ୍କୁ ସମାଜରେ ଚଳାଇ ନିଆଯିବ । ସେ କିନ୍ତୁ ଅଟଳ ଥିଲେ । ସେ ଯାହାକୁ ଠିକ୍ ବୋଲି ବିଚାରନ୍ତି, ତହିଁରେ ବାଧା ଆସିଲେ ମଧ୍ୟ ତାକୁ ଛାଡ଼ି ପାରନ୍ତି ନାହିଁ । ବର୍ଷକ ପରେ କାୟସ୍ଥମାନେ ପୁଣି ସଭା କରି ତାଙ୍କୁ ଅତି ଆଦରରେ ସମାଜରେ ଗ୍ରହଣ କଲେ ।

ସାଧୁ

# ପ୍ୟାରୀମୋହନ ସେନ୍

ଜନ୍ମ—ଜୁଲାଇ ୧୮୩୯ ମୃତ୍ୟୁ—୧୧ ଅଗଷ୍ଟ ୧୯୦୦

କଟକ ଜିଲ୍ଲାର ରଘୁନାଥ ନଗର ( ମାହାଙ୍ଗା ) ଗ୍ରାମରେ ପ୍ୟାରୀମୋହନ ଜନ୍ମ ହୋଇଥିଲେ । ପିତାଙ୍କ ନାମ ଜନାର୍ଦ୍ଦନ ସେନ୍ । ସେ ଏଫ୍. ଏ. ପାସ କରି ପ୍ରଥମେ




କଟକ ଜିଲ୍ଲା ସ୍କୁଲରେ ଶିକ୍ଷକ ହେଲେ । ତାହା ପରେ ସେ ବିଭିନ୍ନ ଜିଲ୍ଲାରେ ଡେପୁଟି ଇନସ୍ପେକ୍ଟର କାର୍ଯ୍ୟ କରିଲେ ।

ତାଙ୍କର କାହାରିକୁ ଭୟ ନ ଥିଲା, କେବଳ ଭଗବାନଙ୍କ ଛଡ଼ା । ସେ ନ୍ୟାୟରୁ ତଳେ ହେଲେ ଟଳୁ ନ ଥିଲେ । ଯେନ ତେନ ପ୍ରକାରେ ଟଙ୍କା ରୋଜଗାର କରି ଧନୀ ହେବାକୁ ସେ ଇଚ୍ଛା କରୁ ନ ଥିଲେ । ସେ ପାପଠାରୁ ସବୁବେଳେ ଦୂରରେ ଥିଲେ । କେବେହେଲେ ଅଜାଣତରେ ତାଙ୍କଦ୍ୱାରା ପାପକାର୍ଯ୍ୟ ହୋଇ ନାହିଁ । ସେ ଋଷି ପରି ଜୀବନ କଟାଉଥିଲେ । ଓଡ଼ିଆ ତନ୍ତୀ ବୁଣା ପଖାଳକରା ଲୁଗା ଛଡ଼ା ସେ ଜୀବନରେ ଆଉ କିଛି ପିନ୍ଧି ନାହାନ୍ତି । ଖଣ୍ଡିଏ ଅତି ସାଧାରଣ କାମାରେ ତାଙ୍କର କାମ ଚଳିଯାଉଥିଲା । ସେ ପରକୁ ଲୁଚାଇ ଯେତେ ଦାନ କରିଛନ୍ତି, ତାହାର ସୀମା ନାହିଁ । ସେଥିଯୋଗୁଁ ସେ କିଛି ସଞ୍ଚି ପାରି ନ ଥିଲେ ।

— ୨ —

ପ୍ୟାରୀମୋହନଙ୍କ ସାନ ଭାଇ ଗୋପୀମୋହନ । ସାନ ଭାଇଙ୍କ ରୋଜଗାର ବେଳେ ପ୍ୟାରୀମୋହନଙ୍କ ତିନୋଟି ଝିଅଙ୍କର ବିବାହ କାର୍ଯ୍ୟ ସରି ଯାଇଥିଲା । କେବଳ ଗୋଟିଏ ପୁଅ ପାଠ ପଢ଼ୁଥିଲେ । ଗୋପୀମୋହନଙ୍କର ପାଞ୍ଚଟି ଝିଅ ଓ ଗୋଟିଏ ପୁଅ ଥିଲେ । ତେଣୁ ପ୍ୟାରୀମୋହନ ସାନ ଭାଇକୁ ଘର ଖରଚ ସକାଶେ କିଛି ଦେବାକୁ କହୁ ନ ଥିଲେ । କିନ୍ତୁ ଗୋପୀମୋହନଙ୍କର ଭାଇଙ୍କୁ ସାହାଯ୍ୟ ଦେବାକୁ ଭାରି ଇଚ୍ଛା । ତାହା ଜାଣି ପ୍ୟାରୀ ବାବୁ କହିଲେ, "ଦେଖ ଗୋପି, ତୋର ଅନେକ ଝିଅ । ସେମାନଙ୍କର ବିବାହ ପାଇଁ ବହୁତ ଟଙ୍କା ଦରକାର । ମୁଁ ତ ସଂସାର ଖରଚ ଚଳାଇ ଦେଇ ପାରୁଛି । ତୋର ଭାବିବା ଦରକାର ନାହିଁ । ତୁ ଟଙ୍କା ଦେଲେ ମୋ ମନରେ କଷ୍ଟ ହେବ ।"

ପ୍ୟାରି ବାବୁ ରାମ ହେଲେ ଗୋପୀ ବାବୁ ଲକ୍ଷ୍ମଣ । କେହି ତାହାଙ୍କଠାରୁ କମ୍ ନୁହନ୍ତି । ପ୍ୟାରି ବାବୁ ମରିଗଲା ପରେ ଗୋପୀ ବାବୁଙ୍କ ଉପରେ ଘର ଚଳେଇବା ଭାର ପଡ଼ିଲା । ତାଙ୍କର ପୁଅଟି ସବୁବେଳେ ରୋଗା । ସେ ବାପାଙ୍କୁ କହିଲେ, "ମୁଁ ତ ରୋଗା, ଚାକିରି କରି ପେଟ ପୋଷିବା ମୋ ଦ୍ୱାରା ହେବନାହିଁ । ମୋ ନାଁରେ କିଛି ଜମି ଅଧିକା କରି ନ ଦେଲେ ମୁଁ ବିବାହ କରିବି ନାହିଁ । ସେତେବେଳକୁ ବଡ ଭାଇଙ୍କ ପୁଅ ଭୁବନମୋହନ ବେଶ୍ ରୋଜଗାର କଲେଣି । ତଥାପି ଗୋପୀମୋହନଙ୍କୁ ପୁଅ କଥା ଭଲ ଲାଗିଲା ନାହିଁ । ସେ ଏପରି ଅନ୍ୟାୟ କାର୍ଯ୍ୟ କରି ପାରିବେ ନାହିଁ ବୋଲି ପୁଅକୁ ସଫା ଜଣାଇ ଦେଲେ । ତାଙ୍କ ସ୍ତ୍ରୀ ମଧ୍ୟ ତାଙ୍କୁ ପୁଅ ନାମରେ କିଛି ଅଲଗା ସମ୍ପତ୍ତି କିଣି ଦେବାକୁ ଅନୁରୋଧ କଲେ । ବନ୍ଧୁ ବାନ୍ଧବମାନେ ସେହି କଥା କହିଲେ । କିନ୍ତୁ ସେ କାହାର କଥା ନ ରଖି କହିଲେ, "ମୁଁ ଯଦି ମୋ ପୁଅ ନାମରେ ଜମି କିଣେ ତେବେ ଭାରି ଅନ୍ୟାୟ ହେବ । ବଡଭାଇ ମୋତେ କେତେ ସ୍ନେହ କରୁଥିଲେ । ସେ ବର୍ତ୍ତମାନ ସ୍ୱର୍ଗରେ । ସେ କଣ ମୋତେ ପାଶୋର ବୋଲି ଆଉ କହିବେ ? ମୁଁ ଭୁବନକୁ ପୁଅ ପରି ଶ୍ରଦ୍ଧା କରେ । ତାକୁ କେମିତି ମୁହଁ ଦେଖାଇବି ? ମୋର ପୁଅ ବରଂ ବିଭା ନ ହେବ, ମୁଁ ଭାଇ ଓ ପୁତୁରା ପ୍ରତି ଅନ୍ୟାୟ କରି ପାରିବି ନାହିଁ । ଗୋପୀମୋହନ ଅଟଳ ଓ ଅଟଳ ହୋଇ ରହିଲେ । ମଲାଦିନ ପୂର୍ବରୁ ପୁଅର ବିବାହ ଦେଖି ପାରିଲେ ନାହିଁ ।

—୨—

ଶ୍ୟାମମୋହନଙ୍କ ଅଧୀନରେ ଜଣେ ଶିକ୍ଷକ ଦରକାର ହେଲେ ୨/୩ ଜଣଙ୍କ ଉପର ହାକିମ ଜଣଙ୍କ ପାଇଁ ସୁପାରିସ୍ କରି ତାଙ୍କ ନାଁକୁ ପଠେଇ ଦେଲେ । ପୁଣି କିଛି ଦିନ ପରେ ସେହି ହାକିମ

ଆଉ ଜଣଙ୍କ ପାଇଁ ଅନୁରୋଧ କଲେ । ପ୍ୟାରୀ ବାବୁ ତାଙ୍କୁ ଜଣାଇଲେ, "ଖଣ୍ଡିଏ ବୋଲି ଚୌକିଟ । ସେଥିରେ ଦୁଇ ଜଣଙ୍କୁ କିପରି ରଖାଯିବ ?" ତା ଛଡ଼ା ମୁଁ ଦେଖୁଛି, ଦୁହିଙ୍କ ଭିତରୁ କେହି ଉପଯୁକ୍ତ ନୁହନ୍ତି । ସୁତରାଂ ମୁଁ ଆପଣଙ୍କ ଅନୁରୋଧ ରଖିପାରୁ ନାହିଁ । ଏହା ପରେ ଠିକ ଆଉ ଜଣେ ଯୋଗ୍ୟ ଲୋକଙ୍କୁ ଚାକିରି ଦେଲେ କାଳେ ଉପର ହାକିମ ରାଗିବେ, ଏ କଥା ମନକୁ ଆଣି ନ ଥିଲେ ।

—୩—

ଦିନେ ପ୍ୟାରୀମୋହନ ରାସ୍ତାରେ ଯାଉଥିଲେ । ରାସ୍ତାରେ ଗୋଟିଏ ଗଛର ଡାଳ ତାଙ୍କ ସଗଡ଼ରେ ଲାଗି ଭାଙ୍ଗିଗଲା । ସେଠାରୁ ଥାନା ଅନେକ ଦୂର । ତଥାପି ସେ ସେହି ଡାଳ ଖଣ୍ଡିକ ନେଇ ଥାନାକୁ ଗଲେ । ଥାନା ବାବୁ ଏହାଦେଖି ବାବାଡ଼ୋଇଗଲେ ଏବଂ କହିଲେ "ଆପଣ ତ ଜାଣିଶୁଣି ଭାଙ୍ଗି ନାହାନ୍ତି । ଏହି ସାମାନ୍ୟ ଡାଳ ଖଣ୍ଡିକ ଘେନି ଥାନାକୁ କାହିଁକି ଆସିଲେ ?" ସେ କହିଲେ, "ମୋ ଗାଡ଼ିବାଲା ସାବଧାନ ନ ହେବାରୁ ଡାଳ ଭାଙ୍ଗିଗଲା । ସେଥିପାଇଁ ମୋର ଜୋରିମାନା ଦଶ ପଇସା ଥାନାରେ ଦେଇ ଚାଲି ଆସିଲେ ।

—୪—

ତାଙ୍କର ଜଣେ ଅଧୀନ କର୍ମଚାରୀ କଣ୍ଟି ବାସନ ସବୁ ଚାଉଳ ଓ ବହୁତ ପରିମାଣରେ ଗୁଆ ଘିଅର ଗୋଟିଏ ଭାର ଘେନି ତାଙ୍କ ଘରେ ପହଞ୍ଚିଲେ । ଚାକରମାନେ ଏ ସବୁ ଜିନିଷ ଘର ଭିତରକୁ ନେବାକୁ ଉଠୁଥିଲେ । ମାତ୍ର କର୍ମଚାରୀ ଜଣକ ଖୁବ୍ ବାଧ କରିବାରୁ ସେମାନେ ନେଲେ । ପ୍ୟାରୀମୋହନ ତାହା ଦେଖି ଖୁବ୍ ଜୋରରେ ଗର୍ଜନ କଲେ । ସବୁ ଜିନିଷ ଫେରାଇ ଦିଆଗଲା । ପ୍ୟାରୀମୋହନ ତାଙ୍କ

ପାଖକୁ ଯାଇ ପଚାରିଲେ; "ଆପଣ ଲାଞ୍ଚ ଦେଉଥିବାରୁ ଗୁହକାରୀରୁ କାହିଁକି ବରଖାସ୍ତ ନ ହେବେ, ତାହାର କୈଫିୟତ୍ ଦଅନ୍ତୁ ।" କର୍ମଚାରୀ ଗୋଟିକଯାକ ଥରିଲେ, କ୍ଷମା ମାଗିଲେ ଓ ଆଉ ଏପରି କରିବେ ନାହିଁ ବୋଲି ପ୍ରତିଜ୍ଞା କଲେ । ବାବୁ ତାଙ୍କୁ କ୍ଷମା ଦେଇ ଚାଉଳ ଓ ଘିଅ ସହିତ ବିଦାୟ ଦେଲେ ।

—୪—

ପ୍ୟାରୀ ବାବୁ ପୁରୀରେ ଡେପୁଟି ଇନ୍‌ସପେକ୍ଟର ଥିଲାବେଳେ ଇନ୍‌ସପେକ୍ଟର ରାଧାନାଥ ରାୟ ସେଠାକୁ ଯାଇ ଥାନ୍ତି । ଦୁହେଁ ଗୋଟିଏ ଜାଗାରେ ଥିଲେ । ଦିନେ ଜଣେ ପଣ୍ଡିତ ପ୍ରାୟ ଦୁଇ ଟଙ୍କା ମୂଲ୍ୟର ପଇଡ଼ ନେଇ ଦୁହିଁଙ୍କୁ ଭେଟି କଲେ । କାଳେ ରାଧାନାଥ ବାବୁଙ୍କୁ ଦିଆଯାଉଥିବ ଭାବି ପ୍ୟାରୀମୋହନ ସେତେବେଳେ କିଛି କହିଲେ ନାହିଁ । କିଛି ସମୟ ପରେ ରାଧାନାଥଙ୍କ ଅନୁରୋଧ ଏଡ଼ି ନ ପାରି ସେ ଏହି ପଇଡ଼ରୁ ଗୋଟିଏ କ ଯୋଡ଼ଏ ଖାଇଲେ । ସଞ୍ଜବେଳକୁ ପ୍ୟାରୀ ବାବୁ ଯାଇ ପଣ୍ଡିତଙ୍କ ଘରେ ହାଜର । ସଙ୍ଗରେ ଗୋଟିଏ ଚାକର ଦୁଇ ଟଙ୍କାର ବଡ଼ ମାଛ ଧରିଛି । ପଣ୍ଡିତେ ଏହା ଦେଖି ଆଶ୍ଚର୍ଯ୍ୟ ହେଲେ ଏବଂ କଥାର ରହସ୍ୟ ବୁଝିପାରି କହିଲେ, "ଆଜ୍ଞା, ମୋ ବାଡ଼ିରୁ ପଇଡ଼ ତୋଳି ଆପଣମାନଙ୍କୁ ଦେଇଥିଲି । ଆପଣ ହାତରୁ ପଇସା ଖରଚ କରି ଏତେ ମାଛ କାହିଁକି ଦେଉଛନ୍ତି ।" ସେ କହିଲେ, "ଆପଣ ନିଜ ବାଡ଼ିରୁ ପଇଡ଼ ଦେଲେ । ମୁଁ ସେମିତି ନିଜ ପଇସାରୁ ମାଛ କିଣି ଦେଲି । ଆପଣ କାହିଁକି ବ୍ୟସ୍ତ ହେଉଛନ୍ତି ?"

—୨—

ପ୍ୟାରୀ ବାବୁ ବଡ଼ ମାଛ ପ୍ରିୟ ଥିଲେ । ଥରେ ସେ ରାସ୍ତାରେ ଥିବାବେଳେ ତାଙ୍କ ଚାକର କେଉଁଠୁ ହେଲେ ମାଛ ପାଇଲା ନାହିଁ ।

ସେ ଗୋଟାଏ ଜାଗାରେ ଦେଖିଲା, ଜଣେ କେହି ମୁଗୁର ବସାଇ ଯାଇଛନ୍ତି ଓ ସେଥିରେ କିଛି ମାଛ ପଡ଼ିଛନ୍ତି । ସେ ସେହି ମାଛ ଆଣି ବାବୁଙ୍କୁ ଦେଖାଇଲା, ବାବୁ ହସି ଭାବିଲେ ଓ ପର ଜିନିଷ ଆଣିବା ଚୋରି ସାଙ୍ଗରେ ସମାନ ବୋଲି କହିଲେ । ମାଛର ମୂଲ୍ୟ ଛଅଟି ପଇସା ହେବ ଭାବି ସେ ତାହାର ଦୁଇ ଗୁଣ ଅର୍ଥାତ୍ ଛଅଟି ପଇସା ଚାକରକୁ ଦେଇ କହିଲେ, "ଯା, ଏହାକୁ ମୁଗୁର ଭିତରେ ରଖିଦେଇ ଆସିବୁ ।"

—୭—

ପ୍ୟାରୀମୋହନ ଥରେ ଗୋଟିଏ ସ୍କୁଲ୍ ଦେଖିବାକୁ ଯାଇଥିଲେ । ତାହା ଲକ୍ଷ୍ମୀନାଥ ଜମିଦାରଙ୍କ ଜମିଦାରୀରେ । ବାବୁ ପହଞ୍ଚିବା ମାତ୍ରେ ଜମିଦାର ତାଙ୍କ ପାଇଁ ଚାଉଳ, ଡାଲି ଓ କାଠ ପ୍ରଭୃତି ପଠାଇ ଦେଲେ । ପ୍ୟାରୀମୋହନ ସଙ୍ଗେ ସଙ୍ଗେ ସେ ସବୁ ଫେରାଇ ଦେଲେ । ଜମିଦାରଙ୍କ ପ୍ରତାପ କାହିଁରେ କଣ । ତାଙ୍କୁ ବଡ ଅପମାନ ଲାଗିଲା । ସେ ଖୁବ୍ ରାଗିଯାଇ ଲୋକମାନଙ୍କୁ ଜଣାଇ ଦେଲେ ଯେ, ପ୍ୟାରୀମୋହନଙ୍କୁ କେହି ଯେମିତି ଏକ ଛଦାମର ଜିନିଷ ନ ବିକନ୍ତି । ତାଙ୍କ ପାଖରେ କାଠ ଛଡ଼ା ସବୁ ଜିନିଷ ଥିଲା । ଚାକର କାଠ କିଣିବାକୁ ବଜାରକୁ ଗଲା ଓ ସେଠାରେ ଶୁଣିଲା ଯେ ତାଙ୍କୁ ଜିନିଷ ବିକିବାକୁ ମନା କରାଯାଇଛି । ପ୍ୟାରୀବାବୁ ରାତିଟି ଉପାସରେ କଟାଇଲେ । ତହିଁ ଆର ଦିନ ସକାଳେ ଜମିଦାରଙ୍କ ଇଲକା ବାହାରେ ଦଶ ମାଇଲ ଦୂରରୁ କାଠ କିଣା ହୋଇ ଆସିଲା । ପ୍ୟାରୀ ବାବୁ ଜମିଦାରଙ୍କ ବଶ ହେଲେ ନାହିଁ କି ତାଙ୍କୁ ଟିକିଏ ହେଲେ ଡରିଲେ ନାହିଁ ।

—୮—

ପ୍ୟାରୀମୋହନ ପୁରୀ ଜିଲାରେ ଗୋଟିଏ ସ୍କୁଲ୍ ଦେଖି ଖୋରଧା ଛତାବର କୋଠିରେ ପହଞ୍ଚିଲେ । ସେଠାରେ କବିବର ରାଧାନାଥ

ଷ୍ଟପ୍ଥ ଥାଆନ୍ତି । ରାଧାନାଥ ତାଙ୍କୁ କହିଲେ, "ଅପଣଙ୍କ ଲୋଗାଇ ହେଉ ହେଉ ବିଳମ୍ବ ହୋଇଯିବ । ଆପ ବୋଷାଇ ସଦ୍‌ଗଣି । ଆପଣ ଆମରଅଡେ ଗଣ୍ଡିଏ ଖାଇ ଦଅନ୍ତୁ । ସେ କହିଲେ, "ଆଜ୍ଞା, ମୋତେ ଅନୁରୋଧ କରନ୍ତୁ ନାହିଁ । ମୋର ଏପରି ଖାଇବାର ଅଭ୍ୟାସ ନାହିଁ ।" ଏହା କହି ଘନବାରଷ୍ଟାରେ ସେଠାରୁ ଡିନିମାଇଲ ଦୂରରେ ଥିବା ଗଙ୍ଗପଡ଼ା କୋଠିକୁ ଗ୍ଳଲଗଲେ । ସେଠାରେ ଖାଉ ଖାଉ ଦୁଇଟା ବାଜି ଯାଇଥିବ । ରାଧାନାଥ ତାଙ୍କ ଉପର ହାକିମ । ଅଥଚ ସେ ତାଙ୍କ କଥା ରଖି ଦେବାକୁ ଟିକିଏ ହେଲେ ପଛଘୁଞ୍ଚା ଦେଲେ ନାହିଁ ।

—୯—

ପ୍ୟାରୀମୋହନଙ୍କ ପୁଅଟିର ଧାବାନ ଖୁବ ଜାକଜମକରେ ହୋଇଥିଲା । ସେ ଧର୍ମାଘରୁ କନ୍ୟା ନ ଅଣି ଗୋଟିଏ ଗରିବ ଘରୁ ଅଣିବାକୁ ପୂର୍ବରୁ ପ୍ରତିଜ୍ଞା କରିଥିଲେ । କାର୍ଯ୍ୟରେ ତାହାହିଁ ହୋଇଥିଲା ।

ଅର୍ଚ୍ଚନା କହିବାର ଜଣ ଟିକିଏ ଦୋଷ ଥିବାରୁ ତାଙ୍କ ଗ୍ରାମର ଜଣେ ଗରିବଲୋକ ଖାଇବାକୁ ଆସିଲେ ନାହିଁ । ସେ କଥା ଶୁଣିପାରି ପ୍ୟାରୀ ବାବୁ ସେହିକ୍ଷଣି ତାଙ୍କ ଘରକୁ ଗଲେ । ତାଙ୍କ ହାତ ଧରି ଛନ୍ଦ ଲାଗି ତାଙ୍କୁ ଘରକୁ ଡାକି ଅଣିଲେ । ସେ ଖାଇ ସରିବା ପର୍ଯ୍ୟନ୍ତ ପ୍ୟାରୀ ବାବୁ ତାଙ୍କ ପାଖରେ ବସି ରହିଲେ ।

—୧୦—

ସେ କେଉଁଠିକି ଗ୍ରାମକୁ ଗଲେ ସଙ୍ଗରେ କାଗଜ, ପେନସିଲ, କଲମ, ବହି, ପିନ୍ଧିବା କସ୍‌ମିସ୍ ପ୍ରଭୃତି ଅନେକ ଜିନିଷ ସଙ୍ଗରେ ନେଇଥାନ୍ତି । ଯେତେବେଳେ ପାଠଶାଳୀ ଘରକୁ ବୁଲିଯାନ୍ତି, ସେତେବେଳେ ପିଲାଙ୍କୁ ତାଙ୍କ ପାଠ ପରୀକ୍ଷା କରି ଏହାସବୁ ଜିନିଷବାଣ୍ଟି

ଦେଉନ୍ତି । ଗରିବ ଘରକୁ ବୁଲିଯାଇ ତାଙ୍କ ଦୁଃଖ ଶୁଣନ୍ତି, ସାନ୍ତ୍ୱନା ଦିଅନ୍ତି । କାହାକୁ କାହାକୁ ଟଙ୍କା ପଇସା ଦିଅନ୍ତି । ଯେଉଁ ବିଧବାର ଘର ଭଡ଼ା ଦେବାକୁ କେହି ନାହାନ୍ତି, ତାକୁ ମାସକୁ ମାସ ଟଙ୍କା ଦେଉଥାଇ ଜବାବ ଦେଇ ଆସନ୍ତି । ଏହିପରି ସେ ବହୁତ କୁଟୁମ୍ବକୁ ଟଙ୍କା ଦେଉଥିଲେ ଏବଂ ଅନେକ ଲୋକଙ୍କ ଦରମା ପ୍ରତି ମାସରେ ପଣ୍ଡିତଙ୍କ ପାଖକୁ ପଠାଇ ଦେଉଥିଲେ ।

—୧୧—

ପ୍ୟାରୀମୋହନଙ୍କର ଟିକିଏ ହେଲେ ଲୋଭ ନ ଥିଲା । ସେ ଲୋକର କାହାରି ପଦାର୍ଥରେ ଲୋଭ କରି ନାହାନ୍ତି । ଦିନେ ତାଙ୍କ ଗୁହଳର ବଜାରରୁ ବନ୍ଧାକୋବି ନ ପାଇ ଫେରି ଆସୁଥିଲା । ଏହା ଦେଖି ତାଙ୍କର ଜଳପାନିଆ କର୍ମଚାରୀ ଭଗବାନ ବାବୁ ନିଜ ବଗିଚାରୁ ଦୁଇଟି ବଡ଼ ବନ୍ଧାକୋବି ଗୁହଳର ହାତରେ ଦେଲେ । କୋବି ମାଗଣା ମିଳିଛି ଜାଣି ସେ ଭାରି ବିରକ୍ତ ହେଲେ । ଦିନେ ସେ ଭଗବାନ ବାବୁଙ୍କ ବଗିଚା ଦେଖିବାକୁ ଗଲେ । ତାଙ୍କ ମନ କଥା ମନରେ ରହିଲା । ପ୍ରାୟ ତିନି ମାସ ପର୍ଯ୍ୟନ୍ତ ସେ ଭଗବାନ ବାବୁଙ୍କ ଘରକୁ ନାନା ପ୍ରକାର ଜିନିଷ ପଠାଉଥିଲେ । ଭଗବାନ ବାବୁ ଯାହା ଦେଇଥିଲେ ତାହାର ପଚିଶ ଗୁଣ ମୂଲ୍ୟର ପଦାର୍ଥ ପାଇଲେ ବୋଲି କହୁଥିଲେ ।

—୧୨—

ଦିନେ ଗୋଟିଏ ଗରିବ ସ୍ତ୍ରୀ ଲୋକର ସାତ ବର୍ଷର ଝିଅ ଅଧଅଣାର ଲୁଣ କିଣିବାକୁ ଯାଉଥିଲା । ବାଟରେ ତାହାର ଅଧଲାଟି କେଉଁଠି ଟଳି ପଡ଼ିଲା । ମା' ମାରିବ ବୋଲି ଭୟରେ ବସି ବସି କାନ୍ଦୁଥିଲା । ପ୍ୟାରୀମୋହନ ତାହା ଶୁଣି ତାକୁ ଲୁଣ କିଣିଦେଲେ ଓ ଆଉ କିଛି କିଣିବା ପାଇଁ ଦୁଇଟି ପଇସା ଦେଲେ ।

ଥରେ ତାଙ୍କର ଜଣେ ଗୁମାସ୍ତା ଜମିଦାର ତହବିଲରୁ ପଚ୍ଚିଶ ଟଙ୍କା ତୋଷରଫ କରିଥିଲେ । କେହି କହିଲେ, ତାଙ୍କୁ ଚାକିରିରୁ ବରଖାସ୍ତ କରାଯାଉ, କେହି କହିଲେ ତାଙ୍କ ଦରମାରୁ ଏତିକି ଟଙ୍କା ଆଦାୟ କରାଯାଉ । ପ୍ୟାରୀବାବୁ କହିଲେ, "ତାଙ୍କ ଦରମା ଅଳ୍ପ ଥିବାରୁ ସେ ଟଙ୍କା ଖାଇବାକୁ ବାଧ୍ୟ ହୋଇଅଛନ୍ତି । ଅତଏବ ତାଙ୍କ ବେତନ ଚାରିଟଙ୍କା ସ୍ଥଳେ ଛଅଟଙ୍କା କରାଯାଉ । ଏବଂ ସେଥିରୁ ମାସକୁ ଏକ ଟଙ୍କାଲେଖାଏଁ କାଟି ରଖାଯାଉ ।" ତାଙ୍କର ଏହି ବିଚାରରେ ସମସ୍ତେ ଖୁସିହୋଇଲେ । ଗୁମାସ୍ତା ଆଉ କେବେ ଏପରି କାର୍ଯ୍ୟ କରି ନାହାନ୍ତି ।

---

ବ୍ୟାସକବି

# ଫକୀରମୋହନ ସେନାପତି

ଜନ୍ମ—୧୩ ଜାନୁୟାରି, ୧୮୪୩ମୃତ୍ୟୁ—୧୪ ଜୁନ, ୧୯୧୮

ଫକୀରମୋହନ ବାଲେଶ୍ୱର ଜିଲାର ମଲ୍ଲିକାଶପୁର ଗ୍ରାମରେ ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଲକ୍ଷ୍ମଣଚରଣ ସେନାପତି ଓ ମାତାଙ୍କ ନାମ ତୁଳସୀ ଦେବୀ । ପିଲାଦିନୁ ତାଙ୍କର ବାପ ମା’ ମରିଯାଇଥିଲେ । ବୁଢୀ ମା’



ତାଙ୍କୁ ବଢାଇଥିଲେ । ପିଲମାନେ ନାନା ରୋଗରେ ପଡ଼ିବାରୁ ଚଟଶାଳୀରେ ପଢ଼ା ଆରମ୍ଭ କରିବା ବେଳକୁ ତାଙ୍କୁ ନଅ ବର୍ଷ ହୋଇ ଯାଇଥିଲା । ଗରିବ ଥିବା ହେତୁ

ସେ ବେଶୀ ପଢ଼ି ପାରିଲେ ନାହିଁ । ସେ ନିଜେ ନିଜେ ସଂସ୍କୃତ, ଓଡ଼ିଆ ଓ ଇଂରାଜୀ ପଢ଼ି ଜ୍ଞାନୀ ହୋଇଥିଲେ ।

ସେ ଅଢ଼େଇ ଟଙ୍କା ଦରମାରେ ଶିକ୍ଷକ ଚାକିରି ଆରମ୍ଭ କରି ତିରିଶ ଟଙ୍କା ପର୍ଯ୍ୟନ୍ତ ପାଇଥିଲେ । ତା ପରେ ସେ ଓଡ଼ିଶାର ଅନେକ ଗଡ଼ଜାତରେ କେଉଁଠି ଦେବାନ, କେଉଁଠି ବା ମେନେଜର ହୋଇ ମାସକୁ ଶହେ ଟଙ୍କା କରି ଦରମା ପାଉଥିଲେ ।

ତାଙ୍କ ସମୟରେ ଓଡ଼ିଆ ଭାଷାରେ ଛାପା ବହି କିଛି ନ ଥିଲା କହିଲେ ଚଳେ । ସେ କାବ୍ୟ, କବିତା, ଗଳ୍ପ ଉପନ୍ୟାସ, ରାମାୟଣ, ମହାଭାରତ ଆଦି ଅନେକ ବହି ଲେଖିଅଛନ୍ତି ! ସେଥିପାଇଁ ଲୋକେ ତାଙ୍କୁ 'ବ୍ୟାସ କବି' କହନ୍ତି ।

ସେ ସମୟରେ ବଙ୍ଗାଳିମାନେ ଓଡ଼ିଶାରୁ ଓଡ଼ିଆ ଭାଷାକୁ ମାରିଦେବା ନିମନ୍ତେ ଭାରି ଚେଷ୍ଟା ଚଳାଉଥିଲେ । ଯେଉଁମାନେ ସେଥିପାଇଁ ପ୍ରାଣକୁ ପଣ କରି ଲଢ଼ିଲେ, ଫକୀରମୋହନ ସେମାନଙ୍କ ମଧ୍ୟରେ ଜଣେ । ସେ ବଡ଼ ବୁଦ୍ଧିମାନ ଓ ଚତୁର ଥିଲେ ।

—୧—

ଫକୀରମୋହନ କେନ୍ଦୁଝରର ଦେବାନ କାମ କରୁଥାନ୍ତି । ଭୂୟାଁ ପ୍ରଜାମାନେ ରାଜାଙ୍କ ବିରୁଦ୍ଧରେ ମେଳିକଲେ । ସେମାନେ କାଣ୍ଡ, ଶର ଓ ଖଣ୍ଡା ଧରି ଦାନପାକ ବଣରେ ବୁଲୁଥିଲେ । ରାତି ହେଲେ ଘର ପୋଡ଼ି ଦେଉଥିଲେ, ସମ୍ପତ୍ତି ଲୁଟି ନେଉଥିଲେ ଓ ରାଜାଙ୍କ ପକ୍ଷର ଲୋକଙ୍କୁ ମାରି ପକାଉଥିଲେ । ଭୂୟାଁ ଜାତିର ଧରଣୀଧର ନାମରେ ଜଣେ ଲୋକ ସେହି ମେଳିର ସର୍ଦ୍ଦାର ଥିଲା ।

ଫକୀରମୋହନ ଅନନ୍ତପୁରରୁ କେନ୍ଦୁଝର ଗଡ଼କୁ ଯାଉଥିଲେ । ତାଙ୍କ ସଙ୍ଗରେ କେତେକ ପାଇକ ଥିଲେ । ଭୂୟାଁମାନେ ତାଙ୍କୁ ଧରି ଅଟକ କଲେ ଓ ସର୍ଦ୍ଦାରଙ୍କ ପାଖକୁ ନେଇଗଲେ । ସର୍ଦ୍ଦାର ତାଙ୍କୁ ପଚାରିଲେ, "ତୁମର ବର୍ତ୍ତମାନ କଣ କହିବାର ଅଛି ?" ସେ ତ ଭାରି ଚାଲାକ୍ । ଭାବିଲେ, ବର୍ତ୍ତମାନ ସର୍ଦ୍ଦାରଙ୍କ ଅଡ଼କୁ ଢଳ କଥା ନ କହିଲେ ଜୀବନ ରହିବ ନାହିଁ । କହିଲେ, ଅଜ୍ଞା, ମୋର ଆଉ କହିବାର କଣ ଅଛି ? ମୁଁ ଏ ଦେଶର ଲୋକ ନୁହେଁ । ମୁଁ ଏଠାରେ ଚାକିରି କରେ । ମହାରାଜା ତ ରାଜ୍ୟରୁ ବାହାରି ଗଲେଣି । ଆପଣ ବର୍ତ୍ତମାନ ରାଜା । ଆପଣ ଯଦି ମୋତେ ଚାକର ରଖିବେ, ତେବେ ରହିବି । ନାହିଁ କଲେ ମୋ ଦେଶକୁ ଚାଲିଯିବି ।" ସର୍ଦ୍ଦାର ଓ ଭୂୟାଁମାନେ ତାହା ଶୁଣି ଖୁସି ହେଲେ । ସେମାନେ ଗଡ଼ ଉପରେ ଚଢାଉ କରି ରାଜାଙ୍କ ଗନ୍ତାଘରୁ ଟଙ୍କା ଲୁଟି କରି ଆଣିବା କଥା ଫକୀରମୋହନଙ୍କୁ କହିଲେ । ସେ କହିଲେ, "ଶୁଣନ୍ତୁ ମହାରାଜ; ଗନ୍ତାଘରେ ବହୁତ ଟଙ୍କା ଅଛି । ସେ ସମସ୍ତ ବୋହି ଆଣିବାକୁ ହେବ । ନ ଆଣିଲେ ଏ ଜାଗାରେ କାର୍ଯ୍ୟ କିପରି ଚଳିବ ? କିନ୍ତୁ ଗୋଟାଏ କଥା । ଗଡ଼ ପାଖରେ ପାଇକମାନେ ବନ୍ଧୁକ ଧରି ଠିଆ ହୋଇଛନ୍ତି । ଗଡ଼ ଆଗରେ ଯେଉଁ ତୋପ ବସିଛି, ସେଇଟା ଥରେ ଫୁଟିଲେ ପାଞ୍ଚଶ ଲୋକ ଉଡ଼ିଯିବେ । ଆମେ ଜାଣି ଜାଣି ମରିବାକୁ ଯିବା ?" ଭୂୟାଁମାନେ କହିଲେ, "ତେବେ କଣ କରାଯିବ ?" ସେନାପତି କହିଲେ, "ଆମର ଶହେ ଖଣ୍ଡ ବୋମା ଦରକାର । କଲିକତାରେ କିଣିବାକୁ ମିଳିବ । ଆଗେ ବୋମା କିଣାଯାଉ ।"

ସେନାପତି ଭାବୁଥାନ୍ତି, ଏମାନେ ଯଦି ଗଡ଼ ଚଢାଉ କରିବେ, ରାଜାଙ୍କର ସବୁ ନାଶ ହୋଇଯିବ । ସେ ରାଜାଙ୍କୁ ଖବର ଦେବାପାଇଁ ଭାବୁଥାନ୍ତି, ମାତ୍ର ଉପାୟ ପାଉ ନ ଥାନ୍ତି । ଦିନେ ସୁଯୋଗ ମିଳିଥିଲା ।

ଧରଣୀଧର ବହୁତ ପାନ ଖାଏ । ମେ ସେନାପତିଙ୍କ ବସାକୁ ପାନ ଖାଇବାକୁ ଯାଏ । ଦିନେ ସେନାପତି କହିଲେ, "ଆଜ୍ଞା, ପାନ ସରି ଗଲଣି । ଭଦ୍ରଖରେ ମୋ ଗୃହ ଘର ଖମାରିଆ ଭୋଳାନାଥକୁ ଚିଠି ଲେଖିଲେ ସେ ଶୀଘ୍ର ପାନ ଗୁଆ ପଠାଇ ଦିଅନ୍ତା । ମୁଁ କିଛି ଅଖୁ ଲଗାଇଥିଲି । ପାଣି ନ ପାଇ ତାହା ମରି ଯାଉଥିବ । ଅଜ୍ଞାହେଲେ ସେଥିରେ ପାଣି ମଡ଼େଇବାକୁ ଖମାରିଆକୁ ଲେଖିବି ।" ଅଜ୍ଞା ହେଲା—ହଁ, ଲେଖ, ଲେଖ ।"

ସେନାପତି ପତ୍ର ଲେଖିଲେ—

ଭୋଳାନାଥ ଖମାରିଆ ଜାଣିବୁ—

ମହାରାଣୀଙ୍କ ପୁତ୍ରଙ୍କ ସକାଶେ ନିତାନ୍ତ ଦରକାର । ଅତି ଶୀଘ୍ର ଶହେ ହେଲେ ପାନ, ଦୁଇଶ ଗୁଆ ପଠାଇବୁ । ଉତ୍ତର ପଟରୁ ମାହାଣ୍ଟି କରି ଅଖୁ ବାଡ଼କୁ ଶୀଘ୍ର ପାଣି ବୁହାଇବୁ । ନୋହିଲେ ଆଖୁବାଡ଼ ବିନାଶ ଯିବ ବୋଲି ଜାଣିବୁ । ଇତି ।

ଫକୀରମୋହନ ସେନାପତି

ଧରଣୀଧର ନିଜକୁ ମହାରାଣୀଙ୍କ ପୁତ୍ର ବୋଲି କହେ । ସେ ଚିଠି ଖଣ୍ଡିକ ପଢ଼ାଇ ଶୁଣିଲା ଓ ଗ୍ଲୁଡ଼ପତ୍ରରେ ଦସ୍ତଖତ କଲା । ସେନାପତି ଗୁରିଜଣ ବଳବାନ ପାଇକଙ୍କୁ ଚିଠି ଦେଇ ପଠାଇଲେ । ସେମାନଙ୍କ ଭିତରେ ଜଣେ ଖଣ୍ଡେଇତ ପାଇକ ଥିଲା । ତାହାର ପଇତାରେ ସେ ଡିନିଖଣ୍ଡି ସେ ଢାଟବୋଡଲି ତାର ଗୁଡ଼ାଇ ଦେଲେ । କହିଲେ, ପତ୍ର ସହିତ ତାର ତିନିଖଣ୍ଡି ମଧ୍ୟ ଦିଅଯିବ ।

ରାଜା ସେତେବେଳେ ଅନନ୍ଦପୁରରେ ଥିଲେ । ସେ ପତ୍ର ଓ ତାର ତିନିଖଣ୍ଡି ପାଇ ତହିଁରୁ ଅର୍ଥ ବାହାର କଲେ—

୧ । ସରକାର, ଗଡଜାତର ସୁପରିଣ୍ଟେଣ୍ଡେଣ୍ଟ ଓ ନନ୍ଦକିଶୋର ବା ମଧୁବାବୁଙ୍କୁ ତାର କରିବା ଲଗି ତାର ପଠାଯାଇଛି ।

୨ । ପାନ ଅର୍ଥ ସିପାହ୍ମୀ, ଗୁଆ ଅର୍ଥ ବନ୍ଧୁକର ଗୁଳି ସୁତରାଂ ବନ୍ଧୁକ ସହ ସିପାହ୍ମୀ ।

୩ । ଆଖୁବାଡ଼ି ଅର୍ଥ ରାଜାଙ୍କର ଗଡ । ଉତ୍ତର ଦିଗରୁ ଅର୍ଥ ଗୁଇଁବସା ତରଫରୁ ।

ଏଠି ଖଣ୍ଡାୟତ କର ସାର ମର୍ମ ହେଲା—ଗୁଇଁବସା ତରଫରୁ ସିପାହ୍ମୀ ତୁରନ୍ତ ନ ଗଲେ ଗଡ଼ ଲୁଟପାଟ ଓ ନଷ୍ଟ ହୋଇଯିବ ।

ଏଠି ଅନୁସାରେ କାମ କରାଗଲା । ସରକାରୀ ଫୌଜ ମାଡ଼ ଆସିଲେ । ଧରଣୀଧର ଧରା ହେଲେ । କେତେ ଜଣ ଭୂୟାଁ ମଲେ । ଥୋକେ ଖଣ୍ଡିଆ ହୋଇ ପଳାଇଗଲେ । ଧରଣୀ ଇତ୍ୟାଦି ନାମରେ ମକଦ୍ଦମା ହେଲା । ସେ ପାଁଚବର୍ଷ ଜେଲ ପାଇଲା ।

—୨—

ଡମପଡ଼ାର ପ୍ରଜାମାନେ ମେଳକରି ରାଜାଙ୍କୁ ଖଜଣା ଦେଲେ ନାହିଁ । ତାଙ୍କୁ ନାନା ପ୍ରକାର ହଇରାଣ କଲେ । ପ୍ରଜାଙ୍କ ଉପରେ ପାଞ୍ଚ ବର୍ଷର ଖଜଣା ବାକି ପଡ଼ିବାରୁ ରାଜା ଖରଚ କରିବାକୁ ପଇସାଟିଏ ପାଇଲେ ନାହିଁ । ଅନେକ ହାକିମ ଓ ଭଦ୍ରଲୋକ ପାଞ୍ଚବର୍ଷ ପର୍ଯ୍ୟନ୍ତ ଚେଷ୍ଟା କଲେ । ତଥାପି ରାଜା ଓ ପ୍ରଜାମାନଙ୍କ ଭିତରେ ରଫାନାମା ହୋଇପାରିଲା ନାହିଁ ।

ଶେଷରେ ଫକୀରମୋହନ ସେଠାକୁ ଦେବାନ ହୋଇଗଲେ । ସେ ବୁଦ୍ଧି ଖରଚ କରି ମେଳ ଭାଙ୍ଗିଦେଲେ । ଏକା ଦିନେ ଅଠର ହଜାର ଟଙ୍କା ବାକି ଖଜଣା ଅଦାୟ ହେଲା । ସେହିସବୁ ଟଙ୍କା ନେଇ ରାଜାଙ୍କ ପାଖକୁ ଗଲେ । ରାଜା କହିଲେ, ଆମେ ଏ ଟଙ୍କା ନେବୁ ନାହିଁ । ତୁମେ ଅସୁଲ କରି ଆଣିଛ । ତୁମେ ନିଅ ।" ଏହା କହି ସେ ଘର ଭିତରକୁ ଚାଲିଗଲେ । ଆଉ କିଛି ଶୁଣିଲେ ନାହିଁ । ତହୁଁ ସେ ଟଙ୍କା ନେଇ ରାଣୀଙ୍କୁ ଯାଚିଲେ । ରାଣୀ କହିଲେ, "ରାଜା ତ ଟଙ୍କା ନେଲେ ନାହିଁ, ମୁଁ କେମିତି ନେବି ?

ସେନାପତି ଘଣୀଙ୍କୁ ଠଙ୍କା ରଖିବା ପାଇଁ ଗୋଟିଏ ସିନ୍ଦୁକ ମାଗିଲେ । ତାହା ମଧ୍ୟ ମିଳିଲା ନାହିଁ । ଫକୀରମୋହନ ଭାବିଲେ, "ମୁଁ କାହିଁକି ବା ଏତେ ଟଙ୍କା ନେବି ? ଖଜଣା ଆଦାୟ କରିବା ମୋର କର୍ତ୍ତବ୍ୟ ଏବଂ ମୁଁ ତାହା କଲି । ବିନା କାରଣରେ ଏତେ ଗୁଡ଼ିଏ ଟଙ୍କା ନେଲେ ପାପହିଁ ସାର ହେବ ।

କଟକର ଦୁଇଜଣ ମହାଜନଙ୍କଠାରୁ ରାଜା ପଚିଶ ହଜାର ଟଙ୍କା କରଜ କରିଥିଲେ । ଫକୀରମୋହନ ରାଜାଙ୍କୁ କିଛି ନ ଜଣାଇ କଟକ ଗୁଲିଗଲେ । ଜଣେ ଭରୁଆ ଟଙ୍କାତକ ଭାରରେ ବୋହି ତାଙ୍କ ସଙ୍ଗରେ ଗଲା । ସେ ସେଠାରେ ଜଣେ ମହାଜନଙ୍କୁ ସମସ୍ତ ଟଙ୍କା ଦେଇ ରେଜଷ୍ଟ୍ରୀ ତମସୁକ ପିଠିରେ ଅସୁଲ ଲେଖିଦେଲେ ।

—୩—

ଫକୀରମୋହନ ନୀଳଗିରିରେ ଦେବାନ୍ ହୋଇଥିଲେ । ରାଜାଙ୍କର ପୁଅ ନ ଥିଲା । ସେ ତାଙ୍କର ସାନ ଭାଇଙ୍କର ପୁଅକୁ ପୋଷ୍ୟ ପୁଅ କରି ନେବାକୁ ସ୍ଥିର କରିଥିଲେ । ପରେ ତାଙ୍କର ମତ ବଦଳିଲା । ସେ ପୁତୁରାକୁ ଛାଡ଼ି ତାଙ୍କର ଜଣେ ଫୁଲ-ବିବାହୀର ପୁଅକୁ ପୋଷ୍ୟ ପୁଅ କରିବାକୁ ଠିକ କଲେ । ଏଥିରେ ଦୁଇ ଭାଇଙ୍କ ମଧ୍ୟରେ ବିବାଦ ଲାଗିଲା । ଦିନେ ରାଜାସାହେବ ଫକୀରମୋହନଙ୍କୁ ନୀରେଖା ଜାଗାକୁ ଡାକିନେଇ କହିଲେ, "ମୁଁ ଜଣେ ଫୁଲ-ବିବାହୀର ପୁଅ ରମାକାନ୍ତକୁ ପୋଷ୍ୟପୁଅ କରିବାକୁ ଇଚ୍ଛା କରୁଛି । ସାନ ଭାଇ ଏଥିରେ ବାଧା ଦେଉଛି । ତୁମେ ଚେଷ୍ଟା କଲେ ମୋର ଆଶା ସଫଳ ହୁଅନ୍ତା ।" ଫକୀରମୋହନ ଟିକିଏ ମାତ୍ର ଭୟ ନ କରି କହିଲେ, "ଆପଣ ଯାହା କରିବାକୁ ଯାଉଛନ୍ତି, ତାହା ନିତାନ୍ତ ଅନ୍ୟାୟ । ଟେଙ୍କାତ ଆଇନ ୨୫ ଧାରା ଅନୁସାରେ ପୁତୁରା ଥାଉଁ ଥାଉଁ ଆପଣ ଆଉ କାହାରିକୁ ପୋଷ୍ୟପୁଅ କରି

ପାରବେ ନାହିଁ । ମୁଁ ଏଭଳି ଅନ୍ୟାୟ କାର୍ଯ୍ୟରେ ମୁଣ୍ଡ ପୂରାଇବ ନାହିଁ ।”

— ୧୪ —

ନଅଙ୍କ ଦୁର୍ଭିକ୍ଷ ବେଳର କଥା । ସେତେବେଳେ ଫକୀରମୋହନଙ୍କୁ ତେଇଶ ବର୍ଷ । ଆଶ୍ୱିନ ମାସ ଆରମ୍ଭରୁ ବର୍ଷା ଛାଡିଗଲା । ଧାନ ଗଛଗୁଡ଼ିକ ଶୁଖି କୁଟାପରି ହୋଇଗଲା । କେତେକ ଧାନ ଅଧାଅଧି ବାହାରିଥାଏ । ଆଉ କେତେକ ପୂରା ବାହାରି ସାରିଥାଏ । ସେଗୁଡ଼ିକ ଅଣଖିଆ ଚଅଁର ପରି ଦୋହଲୁଥାଏ । ଲୋକେ ବିଲରେ ଗୋରୁଗାଈ ଛାଡ଼ି ଦେଇଥାନ୍ତି । ସେମାନେ ଧାନଗଛ ସବୁ ଥରେ ଅଠରେ ଶୁଙ୍ଘି ଚାଲିଯାନ୍ତି, ଖାଆନ୍ତି ନାହିଁ । ଫକୀରମୋହନଙ୍କ ଘର ପାଖରୁ ଅଧମାଇଲ ଦୂରରେ ଧାନ ବିଲ । ଚାହିଁଲେ ଆଖି ପାଇବ ନାହିଁ । ଧାନ ବିଲର ଅବସ୍ଥା ଦେଖି ତାଙ୍କ ହୃଦୟ ବିକଳ ହୁଏ । ଶହ ଶହ ଲୋକ ମରୁଥିବାର ଦେଖି ତାଙ୍କ ପ୍ରାଣ କାନ୍ଦିଉଠେ । ସେ ସକାଳୁ ଗାଧୋଇ ପଡ଼ ଖଣ୍ଡିଏ କମ୍ବଳ ଆସନ କାଖରେ ଯାକି ଏକୁଟିଆ ଧାନ ବିଲକୁ ଯାଆନ୍ତି । ବିଲରେ ଆସନ ପାରି ଦେଇ ବସି ଭଗବାନଙ୍କୁ ପ୍ରାର୍ଥନା କରନ୍ତି—“ହେ ପ୍ରଭୋ, ଲୋକମାନଙ୍କୁ ରକ୍ଷାକର ।”

ଫକୀରମୋହନ ବଡ ଦୟାଳୁ ଥିଲେ । ପିଲାଦିନେ ସେ ବଡ଼ ଗରିବ ଥିଲେ ଓ ବହୁକଷ୍ଟରେ ଚଳୁଥିଲେ । ବଡ଼ ହୋଇ ଟଙ୍କା ରୋଜଗାର କଲାବେଳକୁ ସେ ପିଲାଦିନର କଥା ସବୁ ଭୁଲିଯାଇ ନ ଥିଲେ । ଦୀନହୀନ ଲୋକଙ୍କୁ ଦେଖିବା ମାତ୍ରେ ତାଙ୍କ ଆଖିରେ ଲୁହ ଜମିଯାଏ । ସେ ଜୀବନରେ ବହୁତ ଟଙ୍କା ରୋଜଗାର କରିଅଛନ୍ତି, ମାତ୍ର କିଛି ସଞ୍ଚି ପାରି ନାହାନ୍ତି । କେହି ଅଭାବରେ ପଡ଼ିଲେ ତାଙ୍କ ମନ ଅସ୍ଥିର ହେଉଥିଲା । ତାହାର ଅଭାବ ନ ମେଣ୍ଟାଇବା ପର୍ଯ୍ୟନ୍ତ ସେ ଚୁପ ହୋଇ ବସି ପାରୁ ନ ଥିଲେ ।

ନିଜ ଗାଁରେ ଥିବାବେଳେ ପଡ଼ୋଶୀ ଘରକୁ ବୁଲିଯିବା ତାଙ୍କର ଅଭ୍ୟାସ ଥିଲା । କାହାକୁ ଚାଉଳ ଦେଇ, କାହାକୁ ବା ପଇସା ଦେଇ ସେ ପଡ଼ୋଶୀର ଦୁଃଖ ଘୁଞ୍ଚାଉଥିଲେ ।

ସେ ଘାସ କଟାଠାରୁ ଘୋଡ଼ାଚଢ଼ା ପର୍ଯ୍ୟନ୍ତ ସବୁ କାମ ଜାଣିଥିଲେ । ସେ ଯୌବନରେ ଅଭାବରେ ଟଙ୍କା ପାଇଁ ସିଲାଇ କରିଛନ୍ତି ଏବଂ ଛାପାଖାନା ବସାଇ ଅକ୍ଷର ଯୋଡ଼ିବା କାମଠାରୁ ବହି ଛାପିବା ପର୍ଯ୍ୟନ୍ତ ସବୁ ପ୍ରକାର କାମ କରିଛନ୍ତି । ସେ କୌଣସି କାମକୁ ଶ୍ରେଷ୍ଠ ବା ହୀନ ବୋଲି ଭାବୁ ନ ଥିଲେ । ଅଳସୁଆପଣ ତାଙ୍କ ଜୀବନରେ ନ ଥିଲା । କଠିନ ରୋଗରେ ପଡ଼ିଥିଲେ ସୁଦ୍ଧା ଟିକିଏ ସୁସ୍ଥ ହେଲା ମାତ୍ରକେ ସେ କିଛି-ନା-କିଛି କାମ କରି ପକାଉଥିଲେ ।

—୬—

ଡମପଡ଼ା ଦେବାନୀ କାମ ଛାଡ଼ି ଫକୀରମୋହନ କଟକରେ ଥାଆନ୍ତି । ଆଉ କିଛି ରୋଜଗାର ଜୁଟି ନ ଥାଏ । ତାଙ୍କର ବସା ଖରଚ ଅତି କଷ୍ଟରେ ଚାଲୁଥାଏ । ସେହି ସମୟରେ ଡମପଡ଼ା ରାଜା ମଝେ ମଝେ ତାଙ୍କ ପାଖକୁ ଆସୁଥାନ୍ତି । ରାଜା ତାଙ୍କର ଅଭାବ କଥା ଶୁଣି ତାଙ୍କୁ ମାସକୁ ଶହେ ଟଙ୍କା ଲେଖାଏଁ ସାହାଯ୍ୟ କରିବାକୁ କହିଲେ । ମାତ୍ର ଫକୀରମୋହନ କିଛି କାମ ନ କରି ଦାନ ନେବାକୁ ରାଜି ହେଲେ ନାହିଁ । ରାଜା ତାଙ୍କୁ କୌଣସି ପ୍ରକାର ମଙ୍ଗାଇ ନ ପାରି କହିଲେ, "ଆପଣ ଏଣିକି ମୋର ଏଠାରେ ଥିବା ଗାଡ଼ି ଓ ଘୋଡ଼ାର ତତ୍ତ୍ୱ ବୁଝନ୍ତୁ ଓ ମୋ ସାଙ୍ଗରେ ପ୍ରତିଦିନ ଖୁସି ଗପ କରନ୍ତୁ । ମୁଁ ଆପଣଙ୍କୁ ଚାଳିଶ ଟଙ୍କା କରି ଦରମା ଦେବି ।" ସେ ଏଥିରେ ରାଜି ହୋଇ ଦଶ ମାସ ପର୍ଯ୍ୟନ୍ତ କାମ କରିଥିଲେ ।

## ଉତ୍କଳ-କେଶରୀ

# ମଧୁସୂଦନ ଦାସ

ଜନ୍ମ—୨୮ ଅପ୍ରେଲ ୧୮୪୮ ମୃତ୍ୟୁ—୩ ଫେବୃୟାରି ୧୯୩୪

କଟକ ଜିଲାର ସତ୍ୟଭାମାପୁର ଗ୍ରାମରେ ମଧୁସୂଦନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଓ ମାତାଙ୍କ ନାମ ପାର୍ବତୀ ଦେବୀ । ଗାଁ ଚାଟଶାଳୀରେ ଜଣେ ପୁରୁଣାକାଳିଆ ଅବଧାନଙ୍କ ପାଖରେ ସେ ଖଡ଼ି ପାଠ ଆରମ୍ଭ କରିଥିଲେ । ଖଡ଼ିପାଠ ଶେଷ ହେବା ପରେ ତାଳପତ୍ର ଲେଖନରେ କୋଇଲି ଓ ଗୋପୀଭାଷା ପ୍ରଭୃତି ଲେଖୁଥିଲେ ।



ତା ପରେ ସେ କଟକ 'ଜିଲା ସ୍କୁଲ'ରେ ନାମ ଲେଖାଇଲେ ଓ ୧୬ ବର୍ଷ ବୟସରେ ଏଣ୍ଟ୍ରାନ୍ସ ପାସ୍ କଲେ । ଟଙ୍କା ପଇସାର ଅଭାବ ହେତୁ ସେ ବାଲେଶ୍ୱର ଜିଲା ସ୍କୁଲରେ କିଛି ଦିନ ଶିକ୍ଷକ ଚାକିରି କରି ଟଙ୍କା ଜମାଇଲେ ଓ ତାକୁ ମୂଳ କରି ଆଉ ବେଶୀ ପଢ଼ିବା ପାଇଁ କଲିକତା ଚାଲିଗଲେ । ସେତେବେଳେ ରେଲ୍, ମଟର ନ ଥିବାରୁ ସେ ଚାଲିଚାଲି କଲିକତା ଯାଇଥିଲେ ।

ପଇସା ନଥିଲବେଳେ ଦୁଇ ପଇସାର ମୁଡି ଚୋବାଇ ସେ ଦିନେ ଦିନେ ରହିଯାଉଥିଲେ । ଅନେକ ସମୟରେ କଲିକତା ସହରର ରାସ୍ତା ପାଖ ଆଲୁଅରେ ବସି ପଢୁଥିଲେ । ନାନା କଷ୍ଟ ସହି ସେ ସେଠାରେ ଏଫ୍.ଏ, ବି.ଏ. ଏମ୍.ଏ, ଓ ବି. ଏଲ, ପାସ୍ କରିଥିଲେ ।

ସେ ସେଠାରେ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରି ସୌଦାମିନୀ ନାମକ ଜଣେ ଖ୍ରୀଷ୍ଟିୟାନ ବାଳିକାଙ୍କୁ ବିବାହ କରିଥିଲେ । ମାତ୍ର ପାଞ୍ଚବର୍ଷ ପରେ ସେ ମରିଯିବାରୁ ମଧୁସୂଦନ ଆଉ ବିବାହ କଲେ ନାହିଁ । ତାଙ୍କର ପୁତ୍ର ବା କନ୍ୟା କିଛି ନ ଥିଲେ ।

ସେ ଓକିଲତି କରି ହଜାର ହଜାର ଟଙ୍କା ରୋଜଗାର କରୁଥିଲେ । ନିଜ ଦେଶ ଓ ଓଡ଼ିଆ ଜାତିର ମଙ୍ଗଳ ପାଇଁ ସେ ପାଣି ପରି ଟଙ୍କା ଖରଚ କରିଥିଲେ ।

ସରକାର ତାଙ୍କର ନାନା ଭଲ ଗୁଣ ଦେଖି ତାଙ୍କୁ ସି. ଆଇ. ଇ. ଉପାଧି ଦେଇଥିଲେ ଓ ଓଡ଼ିଶାର ଲୋକେ ତାଙ୍କୁ 'ଉତ୍କଳ-କେଶରୀ' ବୋଲି କହୁଥିଲେ ।

ସେ କିଛିଦିନ ପାଇଁ ବିହାର-ଓଡ଼ିଶାର ମନ୍ତ୍ରୀ ହୋଇ ବର୍ଷକୁ ଚଉଷଠି ହଜାର ଟଙ୍କା ଦରମା ପାଉଥିଲେ ।

ସେ ଓଡ଼ିଶାରେ ପ୍ରଥମ ଏମ୍. ଏ, ପ୍ରଥମ ବି. ଏଲ, ପ୍ରଥମ ମନ୍ତ୍ରୀ; ପ୍ରଥମ ବିଲାତ-ଯାତ୍ରୀ । ନିଜର ମର୍ଯ୍ୟାଦା ରଖିବା ପାଇଁ ମନ୍ତ୍ରୀପଦ ପରି ବଡ ଚାକିରି ଛାଡ଼ିଦେବା ବିଷୟରେ ମଧ୍ୟ ସେ ଭାରତର ପ୍ରଥମ ଲୋକ ।

—୩—

ମଧୁସୂଦନ ପିଲାଦିନେ ଥରେ ଗୋଟିଏ କଥାରେ ଭାରି ରାଗିଯାଇ ମାଆଙ୍କୁ କହିଲେ, "ମୁଁ ଆଜି ରାତିରେ ଖାଇବି ନାହିଁ ।" ମା' ଏକଥା ଶୁଣି ତାଙ୍କୁ କିଛି କହିଲେ ନାହିଁ । ସେ ଉପାସରେ ଶୋଇଲେ । ରାତି ବେଶୀ ହେଲା ବେଳକୁ ତାଙ୍କୁ ଭୋକ ହେଲା । ନିଦ ଲାଗିଲା ନାହିଁ । ଭୋକ ଦାଉରେ ରାଗ ବି ଥଣ୍ଡା ପଡିଗଲା । ସେ ଯାଇ ମାଆଙ୍କୁ କହିଲେ, "ମା' ଭାରି ଭୋକ ହେଉଛି । ମୋତେ ଖାଇବାକୁ ଦେ ।" ମା' ତାଙ୍କୁ ପେଟରେ ଭାରି ସ୍ନେହ କରନ୍ତି ସିନା । ମାତ୍ର ବାହାରେ ଭାରି କଡ଼ା । ସେ ତାଙ୍କୁ ଶାସନ କରିବା ପାଇଁ କହିଲେ, "ତୁ ପରା ଖାଇବୁ ନାହିଁ ବୋଲି କହିଥିଲୁ । ପୁଣି କେମିତି ଖାଇବାକୁ ମାଗୁଛୁ ? ତୋ କଥା ରଖିପାରୁନାହୁଁ, ଏଇଟା ବଡ ଅସୁନ୍ଦର କଥା । ଯେ ନିଜର ପ୍ରତିଜ୍ଞା ଭାଙ୍ଗେ, ସେ ଭଲ ମଣିଷ ହୋଇପାରେ ନାହିଁ । ମଧୁସୂଦନଙ୍କୁ ବଡ ଲାଜ ମାଡ଼ିଲା । ସେ ଆଉ କିଛି ନ କହି ଶୋଇ ପଡ଼ିଲେ ।

—୪—

ମଧୁସୂଦନ କଟକ ଜିଲ୍ଲା ସ୍କୁଲରେ ପଢ଼ିଲାବେଳେ ଜଣେ ବଙ୍ଗାଳୀ ହେଡ୍‌ମାଷ୍ଟର ନୂଆ ହୋଇ ଆସିଲେ । ସେ ଦିନେ ଇଂରାଜୀ ପଢାଇବାବେଳେ ଗୋଟିଏ ବାକ୍ୟର ଯେପରି ଅର୍ଥ କଲେ ତାହା ମଧୁଙ୍କ ମନକୁ ପାଇଲା ନାହିଁ । ସେ ଯାହା ବୁଝିଥିଲେ ତାହା କହିଲେ ଏବଂ ହେଡମାଷ୍ଟର ଯାହା କହୁଛନ୍ତି ତାହା ଭୁଲ ବୋଲି ସଫା ଜଣାଇଦେଲେ । ହେଡ଼ମାଷ୍ଟରଙ୍କୁ ବଡ଼ ଅପମାନ ଲାଗିଲା । ସେ ମଧୁସୂଦନଙ୍କୁ ଅବାଧ୍ୟ ଛାତ୍ର ବୋଲି କହି ସ୍କୁଲରୁ ବାହାର କରିଦେଲେ । ତାଙ୍କର ସାଙ୍ଗ ସାଥୀମାନେ ହେଡମାଷ୍ଟରଙ୍କ

ପାଖରେ କ୍ଷମା ମାଗିବାକୁ ତାଙ୍କୁ ବହୁତ ବୁଝାଇଲେ କିନ୍ତୁ ସେ ମୋଟେ ରାଜି ହେଲେ ନାହିଁ । ଶେଷକୁ ଜଣେ ଭଦ୍ରଲୋକ କଥାଟା ମୀମାଂସା କରି ଦେବାରୁ ସେ ପୁଣି ସ୍କୁଲକୁ ଗଲେ ।

—୩—

ଥରେ ପୁରୀର ଠାକୁର ରାଜା ମୁକୁନ୍ଦଦେବ ବିହାର ଓଡ଼ିଶାର ଲ୍ଲେଟ ଲାଟ୍ ଗେଟ୍ ସାହେବଙ୍କୁ ଭେଟିବାକୁ ଯାଇଥିଲେ । ମଧୁବାବୁ ତାଙ୍କ ସଙ୍ଗରେ ଯାଇଥିଲେ । ରାଜା ମୁକୁନ୍ଦଦେବ ପ୍ରାଚୀନ ରୀତିର ପୋଷାକ ପିନ୍ଧି ଯାଇ ଥାଆନ୍ତି । ତାହା ଦେଖି ଲାଟ୍ ସାହେବ ବଡ଼ ବିରକ୍ତ ହେଲେ । ସାହେବ ଓଡ଼ିଆ ପୋଷାକ ଦେଖି ଘୃଣା କରୁଥିବାରୁ ମଧୁସୂଦନଙ୍କ ମନରେ ବଡ଼ କଷ୍ଟ ହେଲା । ସେ ସାହେବଙ୍କୁ ଏହି ପୋଷାକର ମର୍ଯ୍ୟାଦା କେତେ ତାହା ଭଲ ଭାବରେ ବୁଝାଇ ଦେଲେ ଓ ସାରା ଭାରତର ରାଜାମାନେ ଓଡ଼ିଶାର ଗଜପତି ରାଜାଙ୍କୁ ଠାକୁର ରାଜା ବୋଲି କହି କିପରି ଭକ୍ତି କରନ୍ତି, ତାହା ଜଣାଇ ଦେଲେ । ସାହେବ ଭାରି ଖୁସି ହୋଇଗଲେ ଓ ରାଜାଙ୍କୁ ଆଦର କରି କଥା ବାର୍ତ୍ତା କଲେ ।

—୪—

ମଧୁବାବୁ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରି ଥିଲେ । ତଥାପି ହିନ୍ଦୁ ଧର୍ମ ପ୍ରତି ତାଙ୍କର ସ୍ନେହ କମିଯାଇ ନ ଥିଲା । ହିନ୍ଦୁ ଧର୍ମ ଉପରେ ଆଞ୍ଚ ଲାଗିଲେ ସେ ତାହାକୁ ଦୂର କରିବା ପାଇଁ ଅଣ୍ଟା ଭିଡ଼ି ବାହାରୁଥିଲେ । ପୁରୀ ମନ୍ଦିର ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ମର୍ଯ୍ୟାଦା ରକ୍ଷିବାପାଇଁ ସେ ଯାହା କରିଅଛନ୍ତି, ଜଣେ ହିନ୍ଦୁ ହେଲେ କରି ନ ଥିବ । ସରକାର ପୁରୀ ମନ୍ଦିରକୁ ଠାକୁର ରାଜାଙ୍କ ହାତରୁ କାଢ଼ି ନେଇଥିଲେ । ଏ କଥା ସେ ସହ୍ୟ

ପାରିଲେ ନାହିଁ । ପୁରୀ ରାଜାଙ୍କ ତରଫରୁ ହାଇକୋର୍ଟ ପର୍ଯ୍ୟନ୍ତ ମକଦ୍ଦମା ଲଢ଼ି ସେ ସରକାରଙ୍କୁ ମନ୍ଦିରରୁ ବେଦଖଲ କରିଥିଲେ ।

—୫—

କଟକ ବକ୍ସି ବଜାରରେ ଥିବା କ୍ୟାଣ୍ଟନ୍‌ମେଣ୍ଟ ମାର୍କେଟରେ ଗୋମାଂସ ଲାଗି ଘର ତିଆରି ହେଲା । ଏଥିରେ ସହରର ଲୋକେ ବଡ଼ ଦୁଃଖିତ ହେଲେ ଓ ଆପତ୍ତି ମଧ୍ୟ କଲେ । ଲୋକମାନଙ୍କ ତରଫରୁ ଗୋଟିଏ ବଡ଼ ସଭା ହେଲା । ମଧୁବାବୁ ସେହି ସଭାରେ ସଭାପତି ହୋଇ ସରକାରଙ୍କୁ ନିନ୍ଦା କଲେ । ସେ ସେତିକବେଳେ କହିଥିଲେ, "ଯଦି ଏଠାରେ ଗୋମାଂସ ବିକ୍ରୀ କରିବାର ବ୍ୟବସ୍ଥା ହୁଏ, ତେବେ ରକ୍ତପାତ ହେବ ଏବଂ ମଧୁସୂଦନ ଦାସ ଶରୀରରୁ ପ୍ରଥମ ରକ୍ତବିନ୍ଦୁ ବାହାରିବ ।" ତାଙ୍କର ଏଭଳି କଥାରେ ସରକାର ଦବିଗଲେ ଓ ସେ ପ୍ରସ୍ତାବ ବନ୍ଦ ହୋଇଗଲା ।

—୬—

ମଧୁବାବୁ ଜଣେ ନାମଜାଦା ଓକିଲ ଥିଲେ । ଅନେକ ଓକିଲ ସଙ୍ଗିନ ମକଦ୍ଦମାରେ ପରାମର୍ଶ ଅଣିବା ପାଇଁ ତାଙ୍କ ପାଖକୁ ଯାନ୍ତି । ସେ ସେମାନଙ୍କୁ କୌତୁକ କରି କହନ୍ତି, "ଆରେ, ତୁମେମାନେ କି ଓକାଲତି କରୁଚ ? କହିଲ ଦେଖି, କିଏ ଦିନକରେ ଲକ୍ଷେ ଟଙ୍କା ରୋଜଗାର କରିଛ ।" ଏକଥା ଶୁଣି ସେମାନେ କହନ୍ତି, "ଅଜ୍ଞା, ଆମେ ଲକ୍ଷେ ଟଙ୍କା ରୋଜଗାର କରିବା ତେଣିକି ଥାଉ, ସ୍ୱପ୍ନରେ ସୁଦ୍ଧା ଲକ୍ଷେ ଟଙ୍କା ଦେଖି ନାହୁଁ ।"

—୭—

ଖଣ୍ଡପଡ଼ା ରାଜା ନଟବର ହରିଚନ୍ଦନ ମର୍ଦ୍ଦରାଜ ତାଙ୍କର ଭାଇମାନଙ୍କ ମଧ୍ୟରୁ ଜଣକୁ ମାରି ଦେଇଥିଲେ । ରାଜା ଏକଥା ଲୁଚାଇ

ଦେବାକୁ ଯେତେ ଚେଷ୍ଟା କଲେହେଁ ପାରିଲେ ନାହିଁ । ଶେଷକୁ କଥାଟା ପଦାକୁ ବାହାରି ପଡ଼ିଲା ! ଓଡ଼ିଶାର କମିଶନର ସାହେବ ରାଜାଙ୍କ ଦୋଷଗୁଣ ବିଚାର କରିବାର ଲୋକ । ତାଙ୍କ ପାଖରେ ରାଜାଙ୍କ ବିରୁଦ୍ଧରେ ଦରଖାସ୍ତ ପଡ଼ିଲା । ରାଜା ଆଉ କିଛି ଉପାୟ ନ ଦେଖି ମଧୁବାବୁଙ୍କ ଆଶ୍ରୟ ନେବାକୁ ବାହାରିଲେ । ମଧୁବାବୁ ଧନେ ଘରେ ବସିଛନ୍ତି, ଏହି ସମୟରେ ରାଜା ତାଙ୍କ ପାଖରେ ପହଞ୍ଚିଗଲେ । ସେ ରାଜାଙ୍କୁ ଦେଖି ଧଡ଼ପଡ ହୋଇ ଉଠି ଆସିଲା ବେଳକୁ ରାଜା କହିଲେ, "ମୋତେ ଦେଖିବାକୁ କଅଣ ଆସୁଛନ୍ତି । ଏ ଟଙ୍କା ଓ ଏ ହାତୀ ନିଅନ୍ତୁ । ମୋତେ ବିପଦରୁ ରକ୍ଷା କରନ୍ତୁ । ମଧୁବାବୁ ଟଙ୍କା ଓ ହାତୀ ରଖି ରାଜାଙ୍କୁ ସବୁକଥା ପଚାରି ଗଲେ । ସେ ଗୋଟିଏ ଫିକର ପାଇଁ କମିଶନର ସାହେବଙ୍କ ପାଖକୁ ଗଲେ । କହିଲେ, "ରାଜା ପାଗଳ ହୋଇଯାଇ ଗୋଟାଏ ଲୋକକୁ ମାରି ଦେଇଅଛନ୍ତି । ସାହେବ କହିଲେ, "ସେ ପାଗଳ ବୋଲି କିଛି ପ୍ରମାଣ ଅଛି ?" ମଧୁବାବୁ କହିଲେ, "ହଁ, ଯଦି କହିବେ, ତେବେ ଡାକ୍ତରଙ୍କ ପାଖରୁ ସାର୍ଟିଫିକେଟ୍ ଆଣିପାରେ ।" ସାହେବ ତାହା ଆଣିବାକୁ କହିବାରୁ ମଧୁବାବୁ ରାଜାଙ୍କୁ ନେଇ ଡାକ୍ତରଙ୍କୁ ଦେଖାଇଲେ ଓ ଖଣ୍ଡିଏ ସାର୍ଟିଫିକେଟ୍ ଆଣିଲେ । ସେଥିରେ କମିଶନର ସନ୍ତୁଷ୍ଟ ହୋଇ ରାଜାଙ୍କୁ ଖଲାସ କରିଦେଲେ ।

—୮—

ଥରେ କଟକରେ ଗୋଟିଏ ବଡ଼ ଧରଣର ଡ଼କାୟତି ହେଲା । ପୁଲିସ ଧମାଧମ ଅନୁସନ୍ଧାନ ଚଳାଇଲେ । ଯେଉଁମାନେ ଡ଼କାୟତି କରିଥିଲେ ସେମାନେ ଦଣ୍ଡ ପାଇଲେ । ଯେଉଁ ପୁଲିସ କର୍ମଚାରୀମାନେ ଅସାମୀମାନଙ୍କୁ ଧରି ପାରିଥିଲେ, ସେମାନଙ୍କୁ ସରକାର ପୁରସ୍କାର

ଦେଲେ । କିନ୍ତୁ ମଧୁସୂଦନ ଜୋର କରି କହିଲେ ଯେ, ଯେଉଁମାନଙ୍କୁ ଦଣ୍ଡ ଦିଆଗଲା, ସେମାନେ ପୁରି ନିର୍ଦ୍ଦୋଷ । ସୁନା ରୁପା ଗହଣା ଲୁଟ୍ ହୋଇଥିଲା । ଅଥଚ ଚୋରି ମାଲ ମୋଟେ ଧରାପଡ଼ି ନାହିଁ । ପୁଲିସ କୌଣସି ଜିନିଷ ଉଦ୍ଧାର କରି ପାରିନଥିଲା । ତାହାର କାରଣ ଦେବାକୁ ଯାଇ ପୋଲିସ ରିପୋର୍ଟରେ ଲେଖା ଯାଇଥିଲା ଯେ, ମଧୁସୂଦନ ଦାସଙ୍କର ସୁନାରୁପା ତାରକସି କାରଖାନା ଅଛି । ସେ ଚୋରି ମାଲ କିଣନ୍ତି । ଯେଉଁ ଗହଣାପତ୍ର ଚୋରି ହୋଇଥିଲା, ତାକୁ ସେ ତରଲାଇ ପକାଇଛନ୍ତି ।

ଏହି ଘଟଣାର କିଛିଦିନ ପରେ ଦଳେ ପଶ୍ଚିମା ଡକାୟିତ ଗିରଫ ଦେଲେ । ତଦନ୍ତ କରୁ କରୁ ପ୍ରମାଣ ମିଳିଲା, ସେହି ଦଳ କଟକରେ ଡକାୟିତ କରିଥିଲେ । ସୁତରାଂ ଗୁମର ଆଉ ରହିଲା ପଡ଼ିଗଲା । ନିର୍ଦ୍ଦୋଷ ଲୋକଗୁଡ଼ାଙ୍କୁ ଦଣ୍ଡ ଦିଆଯାଇ ଥିବାରୁ ପୋଲିସ ବିଭାଗର ଭାରି ଦୁର୍ନାମ ହେଲା । ସରକାର ଅପଦସ୍ଥ ହୋଇ ସେହି ଲୋକମାନଙ୍କୁ ଚଞ୍ଚଳ ଖଲାସ୍ କରିଦେଲେ । କେତେକ ପୋଲିସ କର୍ମଚାରୀଙ୍କୁ କାର୍ଯ୍ୟରୁ ବାହାର କରି ଦିଆଗଲା । ପୋଲିସ ମଧୁବାବୁଙ୍କ ବିରୁଦ୍ଧରେ ରିପୋର୍ଟ ଲେଖି ତାଙ୍କ ମର୍ଯ୍ୟାଦା ହାନି କରିବାରୁ ସେ ଲାଟ୍ ସାହେବଙ୍କୁ ଜଣାଇଲେ । ସରକାର ଡରିଗଲେ ଏବଂ ମଧୁବାବୁଙ୍କୁ କ୍ଷମା ମାଗିଲେ ।

—୯—

ମଧୁବାବୁ ବିହାର-ଓଡ଼ିଶା ଲାଟ୍‌ସଭାର ସଭ୍ୟ ହୋଇଥିଲେ । ତାଙ୍କର କାର୍ଯ୍ୟ କରିବାର ଦକ୍ଷତା ଓ ପ୍ରତିଭା ଦେଖି ସରକାର ତାଙ୍କୁ ଜଣେ ମନ୍ତ୍ରୀ କରିଦେଲେ । ମନ୍ତ୍ରୀ ହୋଇ ସେ ବର୍ଷକୁ ଚଉଷଠି ହଜାର ଟଙ୍କା ଦରମା ପାଇଲେ । ଥରେ ସେ ବାଟଲିଶ୍ବର ଜିଲ୍

ଗସ୍ତ କରୁଥାନ୍ତି । ସେଠାରେ ଗୋଟିଏ ସଭାରେ ମଧୁବାବୁ ବକ୍ତୃତା ଦେଲାବେଳେ କହିଲେ, "କର୍ମୀମାନେ ଦେଶରର ମଙ୍ଗଳ କରିବା ପାଇଁ ବାହାର ପଡ଼ିବା ଉଚିତ । ସ୍ୱାର୍ଥ ଆଶା ଛାଡ଼ିବାକୁ ହେବ । ସ୍ୱାର୍ଥ ନ ଛାଡ଼ିଲେ ଲୋକେ ବିଶ୍ୱାସ କରିବେ ନାହିଁ । ତାଙ୍କର ବକ୍ତୃତା ଶୁଣୁଥିବା ଲୋକମାନଙ୍କ ମଧ୍ୟରୁ ଜଣେ କିଏ ପଛପଟୁ ନରମ ଗଳାରେ କହିଲା—"ଇଏ ମନ୍ତ୍ରୀ ହୋଇ ଚଉଷଠି ହଜାର ଟଙ୍କା ପାଉଛନ୍ତି, ଆଉ କର୍ମୀ କାମ କରିବ ପେଟରେ ଓଦାକନା ଦେଇ । ଅଚ୍ଛା ବୁଝାମଣା ତ !" ମଧୁବାବୁଙ୍କ କାନରେ ଏକଥା କେତେ ପଦ ପଡ଼ିଗଲା ।

ସଭାରେ ଯାହା ଶୁଣିଲେ, ମଧୁବାବୁ ତାହା ବାରମ୍ବାର ମନରେ ବିଚାର କଲେ । ଶେଷରେ ଠିକ୍ କଲେ, ମନ୍ତ୍ରୀମାନେ ଦରମା ନ ପାଇବା ଉଚିତ । ସେ ସେହି କଥା ସରକାରଙ୍କୁ ଜଣାଇ ଦେଲେ । ମାତ୍ର ସରକାର ତାଙ୍କ ପ୍ରସ୍ତାବ ଗ୍ରହଣ କଲେ ନାହିଁ । ତେଣୁ ସେ ମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଦେଲେ ।

—୧୦—

ବେକାର ଓଡ଼ିଆମାନଙ୍କୁ କାମ ଯୋଗାଇବା ପାଇଁ ଓ ଲୋକମାନଙ୍କ ରୋଜଗାର ବଢ଼ାଇବା ପ୍ରକାଶେ ମଧୁବାବୁ 'ଉତ୍କଳ ଟାନେରି' ନାମରେ ଗୋଟିଏ ଜୋତା କାରଖାନା ବସାଇଥିଲେ । କଲିକତାରେ 'ହ୍ୱାଇଟ୍-ଆୱେ-ଲେଡ଼ଲ' ନାମରେ ଗୋଟିଏ ସାହେବ କମ୍ପାନୀ ଅଛି । ସେହି କମ୍ପାନୀ ଥରେ ଉତ୍କଳ ଟାନେରିକୁ ଭଲ କିସମର ଜୋତା ଯୋଗାଇବାକୁ ବରାଦ ଦେଇଥିଲେ । ମଧୁବାବୁ ନିଜର ବୁଦ୍ଧି ଖଟାଇ ଜୋତା ତିଆରି କରାଇଲେ । ତାହା ଏତେ ସୁନ୍ଦର ହେଲା ଯେ ବିଲାତ ତିଆରି ଜୋତାକୁ ବଳି ପଡ଼ିଲା ।

ଜୋତାଗୁଡ଼ିକ ଉପରେ ଉତ୍କଳ ଟାନେରର ମୋହର ଦିଆଗଲା । କମ୍ପାନୀର ମେନେଜର ଇଂରେଜ ସାହେବ । ସେ ଉତ୍କଳ ଟାନେରି ତିଆରି ଜୋତା ଦେଖି ଭାରି ପ୍ରଶଂସା କଲେ ଏବଂ ବର୍ଷକୁ ବର୍ଷ ଲକ୍ଷେ ଟଙ୍କାର ଜୋତା କିଣିନେବା ପାଇଁ ରାଜି ହେଲେ । ମ୍ୟାନେଜର ଗୋଟିଏ ସର୍ତ୍ତ ରଖିଲେ । ଉତ୍କଳ ଟାନେରିରେ ଜୋତା ତିଆରି ହେଲେ ମୁଦ୍ଧା ସେଥିରେ ଟାନେରିର ମୋହର ନ ରହି ହ୍ୱାଇଟ୍ ଅଣ୍ଡ୍ୱେ-ଲେଡ୍‌ଲ, କମ୍ପାନୀଙ୍କ ମୋହର ବସିବ ଏବଂ ସେଥିଲାଗି କମ୍ପାନୀ ମଧୁବାବୁଙ୍କୁ ପଚିଶ ହଜାର ଟଙ୍କା ପୁରସ୍କାର ଦେବେ । ମଧୁବାବୁ ତାହା ଶୁଣି କହିଲେ, "ଦଶ ଲକ୍ଷ ଟଙ୍କା ଦେଲେ ମଧ୍ୟ ମୁଁ ମୋ ଟାନେରିରେ ଜୋତା ତିଆରି କରି ଅନ୍ୟ କମ୍ପାନୀର ମୋହର ବସାଇ ନ ପାରେ । ଏହି ଟାନେରି ଲାଗି ମୁଁ ସର୍ବସ୍ୱାନ୍ତ ହେଲଣି । ମୋ ଦେଶର ଯେଉଁ କାରିଗରମାନଙ୍କୁ କେତେ କଷ୍ଟରେ ଏହି କାରଗରୀ ଶିଖାଇଲି, ସେମାନଙ୍କ ହାତ କାମକୁ ଅନ୍ୟର ବୋଲି ମାନିଯିବା ମୋଦ୍ୱାରା ହେବ ନାହିଁ । ସୁତରାଂ ତମ ସର୍ତ୍ତ ଅନୁସାରେ ମୁଁ ଜୋତା ଯୋଗାଇବାକୁ ରାଜି ନୁହେଁ ।"

—୧୧—

ଓଡ଼ିଶା ବାହାରେ ବିହାର, ବଙ୍ଗ, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ପ୍ରଦେଶମାନଙ୍କରେ ଅନେକ ଓଡ଼ିଆ ଅଛନ୍ତି । ସେମାନେ ସେଠାରେ ନାନା ଅସୁବିଧା ସହୁଛନ୍ତି । ସମସ୍ତ ଓଡ଼ିଆ କିପରି ଗୋଟାଏ ପ୍ରଦେଶରେ ରହିବେ, ସେଥିପାଇଁ ତାଙ୍କ ପ୍ରାଣ କାନ୍ଦୁଥିଲା । କାରଣ ସମସ୍ତେ ଗୋଟାଏ ପ୍ରଦେଶରେ ନ ରହିଲେ ଓଡ଼ିଆ ଜାତିର ଉନ୍ନତି ହେବ ନାହିଁ । ସେଥିଲାଗି ସେ ଉତ୍କଳ ସମ୍ମିଳନୀ ନାମରେ ଗୋଟାଏ ଅନୁଷ୍ଠାନ ଗଢ଼ିଲେ । ସଭା ସମିତି କରି ଓଡ଼ିଶାରେ ଆନ୍ଦୋଳନ

ଚଳାଇଲେ । ୧୯୦୭ ଖ୍ରୀଷ୍ଟାବ୍ଦରେ ସେ ବିଲାତ ଯାଇ ସେଠାରେ ନାନା ସ୍ଥାନରେ ଓଡ଼ିଶାକୁ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ କରିବାକୁ ସବୁ ଓଡ଼ିଆଙ୍କୁ ଗୋଟିଏ ପ୍ରଦେଶରେ ରଖିବାକୁ ଦାବୀକରି ବକ୍ତୃତା ଦେଲେ । ବିଲାତର ବଡ଼ ବଡ଼ ଲୋକଙ୍କ ସଙ୍ଗରେ ଦେଖାକରି ସେମାନଙ୍କୁ ସବୁ କଥା ବୁଝାଇ ଦେଲେ । ଫଳରେ ଅନେକ ଦିନ ପରେ ଓଡ଼ିଶା ବିହାରରୁ ଅଲଗା ହୋଇ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେଲା ।

— ୧୨ —

ମଧୁବାବୁ ମରିବାର ଅଳ୍ପ ସମୟ ପୂର୍ବରୁ ପାଖରେ ଥିବା ଲୋକମାନଙ୍କୁ କହିଲେ, "ମୁଁ ତ ଯାଉଛି, ମନେ ରଖିବ ଜଣେ ଓଡ଼ିଆ ଥିଲା । ଏତିକି ମନେ ରଖିଥିବ ।"

---

କବିବର

# ଶ୍ରୀ ରାଧାନାଥ ରାୟ

ଜନ୍ମ—୨୮ ସେପ୍‌ଟେମ୍ବର ୧୮୪୮ ମୃତ୍ୟୁ—ଅପ୍ରେଲ ୧୯୦୮

ବାଲେଶ୍ୱର ଜିଲ୍ଲାର କେଦାରପୁର ଗ୍ରାମରେ ରାଧାନାଥ ଜନ୍ମ ହୋଇଥିଲେ । ତାଙ୍କର ପିତାଙ୍କ ନାମ ସୁନ୍ଦର ନାରାୟଣ ରାୟ ଓ ମାତାଙ୍କ ନାମ ତାରିଣୀ ଦାସୀ । ସେ ଷୋଳବର୍ଷ ବୟସରେ ପ୍ରବେଶିକା ପରୀକ୍ଷାରେ ପାସ୍ କରି ଗୋଟିଏ ପଦ୍‌କାଶ ହାଇସ୍କୁଲରେ ଶିକ୍ଷକ ହେଲେ



ଏବଂ ମାସକୁ ତିରିଶି ଟଙ୍କା ଦରମା ପାଇଲେ । ତାପରେ ସେ ଘରୋଇଭାବରେ ଏଫ୍.ଏ. ( ଆଜିକାଲିର ଆଇ:ଏ: )

ପାସ୍ କଲେ । ତାଙ୍କର ଇଂରାଜୀ, ସଂସ୍କୃତ, ହିନ୍ଦୀ ଓ ବଙ୍ଗଳାରେ ଯଥେଷ୍ଟ ଜ୍ଞାନ ଥିଲା । ସେ କାର୍ଯ୍ୟ କରିବାରେ ବଡ଼ ଦକ୍ଷ ଥିଲେ । ଏଥିଯୋଗୁଁ ସେ କ୍ରମେ କ୍ରମେ ଉପରକୁ ଉଠି ଶେଷରେ ସ୍କୁଲବିଭାଗରେ ଇନ୍‌ସପେକ୍‌ଟର ହୋଇଥିଲେ । ସେତେବେଳେ ସେ ମାସକୁ ଚାରି ଶହ ଟଙ୍କା ଦରମା ପାଉଥିଲେ । ମୟୂରଭଞ୍ଜର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଭଞ୍ଜଦେବ ତାଙ୍କୁ ନିଜ ରାଜ୍ୟର ଦେବାନ୍ ହେବାକୁ ଅନୁରୋଧ କରିଥିଲେ । ସେଥିରେ ସେ ମାସକୁ ଛଅଶ କୋଡ଼ିଏ ଟଙ୍କା ଦରମା ପାଇଥାନ୍ତେ । ମାତ୍ର ରାଧାନାଥ ରାଜି ହେଲେ ନାହିଁ ।

ସେ ଜଣେ ବଡ଼ କବି ଥିଲେ । ମହାଯାତ୍ରା, ଚିଲିକା, ଉଷା ଆଦି କାବ୍ୟ ଲେଖି ସେ ଓଡ଼ିଆ ଜାତିର ଓ ଓଡ଼ିଆ ଭାଷାର ମର୍ଯ୍ୟାଦା ବହୁତ ବଢାଇଛନ୍ତି ।

ସରକାର ତାଙ୍କ ଗୁଣରେ ସନ୍ତୁଷ୍ଟ ହୋଇ ତାଙ୍କୁ 'ରାୟବାହାଦୁର' ଉପାଧି ଦେଇଥିଲେ ।

ବାମଣ୍ଡାର ରାଜା ସାର୍ ବାସୁଦେବ ସୁଢ଼ଳ ଦେବ ତାଙ୍କୁ 'କବିବର' ଉପାଧି ଦେଇଥିଲେ ।

—୧—

ରାଧାନାଥ ଥରେ କଟକରେ ସଞ୍ଜବେଳେ କାକଟକୁ ଡ଼ରି ଛତା ଧରି ଚାଲୁଥିଲେ । ତାଙ୍କ ପଛରେ ଜଣେ କନେଷ୍ଟବଳ ଯାଉଥିଲା । ରାଧାନାଥଙ୍କ ବେଶ ଭୂଷା ସାମାନ୍ୟ ଧରଣର, ପୁଣି ତାଙ୍କୁ ପଛଆଡୁ ଚିହ୍ନିବାର ଉପାୟ ନ ଥିଲା । କନେଷ୍ଟବଳ ଦେଖିଲା, ସଞ୍ଜବେଳେ

କିଏ ଜଣେ ଛତା ଧରି ଯାଉଥିଲା । ସେ ସେହି ପଛଆଡ଼ୁ ଛତା ଉପରେ ହାତବାଡ଼ରେ ଗୋଟିଏ ପାହାର ଦେଲା । ରାଧାନାଥ ଫେରି ଚାହିଁଲେ । କନେଷ୍ଟବଲ ସେତେବେଳେ ଚିହ୍ନି ପାରି ତାଙ୍କୁ ସଲାମ କଲା ଓ କ୍ଷମା ମାଗିଲା । ରାଧାନାଥ ତାଙ୍କୁ କୌଣସି ଭୟ ନ ଦେଖାଇ ଆଶ୍ୱାସନା ଦେଇ କହିଲେ, "ତୁମର ଏଥିରେ କିଛି ଦୋଷ ନାହିଁ । ଏ ଦୋଷ ତୁମ ପୁଲିସ ବିଭାଗର ।"

—୨—

ଥରେ ତାଙ୍କର ଜମିବାଡ଼ି ସମ୍ବନ୍ଧରେ ଗୋଟିଏ ମକଦ୍ଦମା ଚାଲିଥିଲା । ସେଥିରେ ରାଧାନାଥଙ୍କର ପ୍ରାୟ ଛଅଶହ ଟଙ୍କା ଯାଇବାର କଥା । ରାଧାନାଥଙ୍କୁ କୁହାଗଲା, "କଚେରିରେ ତୁମେ ଅମୁକ କଥାକୁ ଟିକେ ବୁଲେଇ କରି କହିବ । କଥାଟା ସତ, ମାତ୍ର ଏଭଳି ନ କହିଲେ ମକଦ୍ଦମା ଖରାପ ହୋଇଯିବ ।" ରାଧାନାଥ କହିଲେ, "ବୁଲେଇ କହିବା ମାନେ ମିଛ କହିବା । ବରଂ ଟଙ୍କା ସବୁ ଯାଉ, ମୁଁ ମିଛ କହି ପାରିବି ନାହିଁ ।" ଯେ ଯେତେ ବୁଝାଇଲେ, ସେ ମିଛ କହିବାକୁ ସାହସ କଲେ ନାହିଁ । ଫଳରେ ସେତିକି ଟଙ୍କା ବୁଡ଼ିଗଲା ।

—୩—

ରାଧାନାଥ ଥରେ ଢେଙ୍କାନାଳର ବାଙ୍ଗୁରସିଂହା ପାଠଶାଳା ଦେଖିବାକୁ ଯାଇଥିଲେ । ସ୍କୁଲ ସବ୍‌ଇନ୍‌ସପେକ୍‌ଟର ଓ ଇନ୍‌ସପେକ୍‌ଟିଂ ପଣ୍ଡିତ ଉଭୟେ ପୂର୍ବରୁ ସେହି ପାଠଶାଳାର ଶିକ୍ଷକଙ୍କ ପାଖକୁ ଖଣ୍ଡିଏ ପତ୍ର ଦେଇଥିଲେ । ସେଥିରେ ଲେଖା ହୋଇଥିଲା—"ପାଠଶାଳା ଘର ସଫା ସୁତୁରା କରିବ । ସମସ୍ତେ ଉପସ୍ଥିତ ରହିବ । ଆମ୍ଭେମାନେ ରାସ୍ତାରୁ ଫେରି ସେଠାରେ ପହଞ୍ଚିବୁ ।

ଇନ୍‌ସ୍‌ପେକ୍‌ଟର ମଧ୍ୟ ଯିବେ ।" ଏଥି ମଧ୍ୟରୁ କେହି ନ ଆସୁଣୁ ରାଧାନାଥ ସେଠାରେ ପହଞ୍ଚିଲେ । ସେ ବାରଣ୍ଡା ତଳେ ବସି ଅଗରେ ଥିବା ଗୋଟିଏ ପର୍ବତ ଅଡ଼କୁ ଚାହିଁ ରହିଥାନ୍ତି । ତାଙ୍କ ବେଶଭୂଷାରୁ ଜାଣିହେଉ ନଥିଲା ଯେ, ସେ ଇନ୍‌ସ୍‌ପେକ୍‌ଟର । ପାଠଶାଳାର ଚୌକିଦାର ଘର ଝାଡ଼ୁସାରି ଅଳିଆ ଯାକ ଝାଡ଼ୁରେ ଅଣି ବାରଣ୍ଡା ଅଡ଼କୁ ପକାଇ ଦେଲା । ସେ ଗୁଡ଼ାକ ରାଧାନାଥଙ୍କ ଉପରେ ପଡ଼ିଲା । ସେହି ମୁହୂର୍ତ୍ତରେ ସ: ଇ: ପ୍ରଭୃତି ସେଠାରେ ପହଞ୍ଚିଲେ । ଇନ୍‌ସ୍‌ପେକ୍‌ଟରଙ୍କୁ ଏତେ ଆଗରୁ ବସି ଥିବାର ଦେଖି ଅପ୍ରସ୍ତୁତ ହୋଇ ଗଲେ । ସେମାନେ କିଛି କହିବା ପୂର୍ବରୁ ରାଧାନାଥ କହି ପକାଇଲେ, ପାଠଶାଳା ବାରଣ୍ଡାରେ ବସି ପର୍ବତର ଶୋଭା ଦେଖୁଥିଲି । ସେଥିରେ ଭୋଳ ହୋଇ ଯାଇଥିଲି । ସ୍କୁଲ ଦେଖିବା କଥା ମୋର ମନରେ ନ ଥିଲା । ଚଉକିଦାର ମୋତେ ଅଳିଅଗଦା ମନେ କରି ମୋ ଉପରେ ଅଳିଆ ଯାକ ପକାଇବାରୁ ମୋର ଜ୍ଞାନ ଫେରି ଆସିଲା । ସେ ବିଚରା ଜାଣେ ନାହିଁ । ତାହାର କିଛି ଦୋଷ ନାହିଁ ।"

— ୦ —

ରାଧାନାଥଙ୍କ ବଡ଼ ପୁଅ ଶଶିଭୂଷଣ ବହୁଗ୍ରାମର ରାଧାନାଥ ସେନ୍‌ଙ୍କ ଝିଅଙ୍କୁ ବିବାହ କରିବେ ବୋଲି ଠିକ୍ ହୋଇ ସାରିଥିଲା । ବିବାହର ଦୁଇମାସ ପୂର୍ବରୁ କନ୍ୟାର ପିତା ମରିଗଲେ । ତେଣୁ ଆଉ କେତେକ ସ୍ଥାନରୁ ପ୍ରସ୍ତାବ ଆସିଲା । ମାତ୍ର ରାଧାନାଥ କହିଲେ, "ଯେଉଁଠି ପୂର୍ବରୁ ସ୍ଥିର ହୋଇଛି, ସେଇଠି ହେବ । ମୁଁ ଜବାବ ଭାଙ୍ଗି ପାରିବି ନାହିଁ ।" ସେ କନ୍ୟାର ମାତାଙ୍କୁ କହିଲେ, "ବିବାହ କାର୍ଯ୍ୟରେ ବେଶୀ ଖର୍ଚ୍ଚ କରିବ ନାହିଁ । ତୁମ ଘରୁ ଯେପରି ଏକ ପଇସାର ଜିନିଷ ମୋ ଘରକୁ ନ ଯାଏ ।" ବିବାହ ସମୟରେ ବେଦୀ

ପାଖରେ ଗୋଟିଏ ଖଟ, ଶେଯ ଓ ବାସନ ପ୍ରଭୃତି ଦେଖି ରାଧାନାଥ ଗର୍ଜି ଉଠିଲେ । କହିଲେ, "ମୁଁ ଏତେ ବାରଣ କରିଥିଲି । ତଥାପି ଏ ସବୁ ଜିନିଷ କେଉଁଠୁ ଆଣିଲ ? ଏଗୁଡ଼ାକ ଉଠାଇ ନିଅ, ମୁଁ କେବେହେଲେ ଏହାକୁ ଛୁଇଁବି ନାହିଁ ।" ସମସ୍ତେ ନାନାପ୍ରକାର ବୁଝାଇ ତାଙ୍କୁ ଶାନ୍ତ କଲେ । ବର କନ୍ୟା ଘରକୁ ଆସିଲେ । ତହିଁ ଆରଦିନ ରାଧାନାଥ ପୁତ୍ରକୁ ଡାକି ନିରୋଳାରେ କହିଲେ, "ମୁଁ ଶୁଣିଲି ତୋର ଶାଶୁ ତିନିଶ ଟଙ୍କା କରଜ କରି ବିବାହ କାର୍ଯ୍ୟ ତୁଲାଇଛନ୍ତି । ମୁଁ ପ୍ରତିମାସ ସେତିକି ଟଙ୍କା ଦେବି ଯାଉଛୁ । କରଜ ପରିଶୋଧ କରି ଦସ୍ତାବିଜ ଫେରାଇ ଆଣିବ । ଏକଥା ଯେପରି ତୋର ମା ନ ଜାଣନ୍ତି । ଜାଣିଲେ ସେ ବୋହୂକୁ ଗଞ୍ଜିବେ ଓ ବୋହୂଙ୍କ ମନରେ କଷ୍ଟ ହେବ । ସାବଧାନ, ଏକଥା ଆଉ କାହାରି ଆଗରେ କହିବ ନାହିଁଟି ।

—୪—

ରାଧାନାଥଙ୍କ ପିତା ସୁନ୍ଦରନାରାୟଣ ସୋର ଗ୍ରାମରେ ଗୋଟିଏ ଭର୍ଣ୍ଣାକୁଲର ସ୍କୁଲ ବସାଇଥିଲେ । ରାଧାନାଥ ସେହି ସ୍କୁଲରେ ପଢ଼ିଥିଲେ । ସେ ବାଲେଶ୍ୱର ଜିଲାର ଡେପୁଟି ଇନ୍‌ସପେକ୍‌ଟର ଏବଂ ପରେ ଓଡ଼ିଶାର ଜଏଣ୍ଟ ଇନ୍‌ସପେକ୍‌ଟର ଓ ଇନ୍‌ସପେକ୍‌ଟର ହୋଇଥିଲେ । ଏହି ଅବସ୍ଥାରେ ସେ ଶହଶହ ଥର ସୋର ସ୍କୁଲ ଦେଖିବାକୁ ଯାଇଛନ୍ତି । ମାତ୍ର ସେ କେବେହେଲେ ସେହି ସ୍କୁଲର ଚଉକିରେ ବସି ନାହାନ୍ତି । ସେ ପ୍ରତିଥର ବେଞ୍ଚରେ ବସି ପିଲାଙ୍କୁ ପରୀକ୍ଷା କରୁଥିଲେ ଓ ସ୍କୁଲର କାଗଜପତ୍ର ଇତ୍ୟାଦି ଦେଖୁଥିଲେ । ସେ କହୁଥିଲେ, "ଯେଉଁ ଚଉକିରେ ମୋର ଗୁରୁଦେବମାନେ ବସି ମୋତେ ପାଠ ପଢ଼ାଉଥିଲେ, ତାହା ମୋ ପକ୍ଷରେ ଅତି ପବିତ୍ର ଜିନିଷ । ମୁଁ ସେଥିରେ ବସିଲେ ଅପରାଧ ହେବ ।



ଥରେ ରାଧାନାଥ ଅମନ୍ତ୍ରଣ ପାଇ କଟକରେ ଗୋଟିଏ ବଭ୍ରାଘର ଭୋଜ ଖାଇବାକୁ ଗଲେ । ତାଙ୍କ ସଙ୍ଗରେ ବଡ଼ ପୁଅ ଶଶିଭୂଷଣ ଥିଲେ । ଉଭୟେ ଚାଲିକରି ଯାଇଥିଲେ । ଘରର ଫାଟକ ପାଖରେ ପୁଲିସ ପହରା ଥାନ୍ତି । ଜଣେ ଜମାଦାର ରାଧାନାଥଙ୍କୁ ପଚାରିଲା, "କାର୍ଡ ଅଣିଛନ୍ତି ?" ସେ ଉତ୍ତର ଦେଲେ, "ଅଣିବା କଥା କାର୍ଡରେ ତ ଲେଖା ହୋଇନାହିଁ ।" ସେତେବେଳେ କଚେରିର କେତେକ କିରାଣୀ ଗାଡ଼ିରେ ଆସିଲେ ଓ ସେ ଗାଡ଼ିଗୁଡ଼ିକ ଫାଟକ ଭିତରକୁ ଚାଲିଗଲା । ରାଧାନାଥ ଫେରି ଆସିବାକୁ ବସିଛନ୍ତି, ଏହି ସମୟରେ ହଠାତ୍ ଜଣେ ଭଦ୍ରଲୋକ ଜମାଦାରକୁ ଠେଲିଦେଇ ତାଙ୍କ ପାଖରେ ପହଞ୍ଚିଲେ ଓ ତାଙ୍କୁ ଭିତରକୁ ଯିବାକୁ ଅନୁରୋଧ କଲେ । ରାଧାନାଥ କହିଲେ, "ବଭ୍ରାଘର ଅଗଣାରେ ପୁଲିସ ପହରା ବସାଇ ଆମ୍ଭମାନଙ୍କୁ ବେଇଜତ କରିବା ଠିକ ହୋଇନାହିଁ । ମୋଭଳି ଯେଉଁମାନେ ଚାଲିକରି ଆସିଛନ୍ତି ସେମାନେ ବୋଧହୁଏ ଫେରି ଯିବେଣି । ମୁଁ ମଧ୍ୟ ଏଠାରୁ ଫେରିଲି । ଭିତରକୁ ଯିବା ଦରକାର ନାହିଁ ।

ଏହାର ଅଧଘଣ୍ଟା ପରେ ନିଜେ ଘରର ମାଲିକ ରାଧାନାଥଙ୍କ ଘରେ ପହଞ୍ଚିଲେ ଏବଂ ତାଙ୍କୁ ଭୋଜିକୁ ଯିବାପାଇଁ ବହୁତ ଅନୁରୋଧ କରି କହିଲେ । ସେ କହିଲେ ମୁଁ ବରଂ କାଲି ଯାଇ ଆପଣଙ୍କ ଘରେ ଖାଇ ଆସିବି । ହାତଯୋଡ଼ି କହୁଛି, ଆଜି କେବେହେଲେ ଯିବି ନାହିଁ । ମୋତେ କ୍ଷମା ଦିଅନ୍ତୁ ।"



ଗୁଜୁରାଟର ଜଣେ ଅନ୍ଧ ମହାପଣ୍ଡିତ ଗଟ୍ଟୁଲାଲ କଟକ ଆସି ରାଧାନାଥଙ୍କ ପାଖରେ ପହଞ୍ଚିଲେ । ତାଙ୍କର ମନେ ରଖିବା ଶକ୍ତି

ଅତି ପ୍ରଖର ଥିଲା । ସେ ବାରଗୋଟି ଭାଷାରେ ଗୋଟିଏ ଗୋଟିଏ ବାକ୍ୟ ଶୁଣି ମନେ ରଖୁଥିବେ । ପର ମୁହୂର୍ତ୍ତିରେ ସେ ସବୁ ଗୋଟି ଗୋଟି କରି କହି ସମସ୍ତଙ୍କୁ ଶୁଣାଇବେ । ଅଥଚ ସେହି ବାରଗୋଟି ଭାଷା ଭିତରୁ ପଣ୍ଡିତ ମହାଶୟ ଆଠଗୋଟି ଭାଷା ଆଦୌ ଜାଣନ୍ତି ନାହିଁ । ରାଧାନାଥ ଭାବିଲେ, ଏତେବଡ଼ ପଣ୍ଡିତଙ୍କୁ ସମ୍ମାନ ନ ଦେଖାଇଲେ ଓଡ଼ିଶାର ନିନ୍ଦା ହେବ । ତେଣୁ ସେ ଗୋଟିଏ ସଭା ଡାକିଲେ । ଅନେକ ଲୋକ ସଭାକୁ ଆସି ତାଙ୍କର ଶକ୍ତି ଦେଖି ବାବା ହୋଇଗଲେ । ତା' ଆରଦିନ ସକାଳୁ ସେ କୋଚବାସରୁ ଷ୍ଟିମର ଚଢ଼ି ଫେରିଯିବାର କଥା । ଘୋଡ଼ାଗାଡ଼ି ଆସିବାରେ ବିଳମ୍ବ ହେଲା । ରାଧାନାଥ ନିଜେ ପଣ୍ଡିତଙ୍କ ମୁଣ୍ଡ ଉପରେ ଛତା ଧରି ତିନି ମାଇଲ ଦୂର ଷ୍ଟିମର ଘାଟକୁ ଚାଲିକରି ଗଲେ ।

ରାଧାନାଥ ସେତେବେଳକୁ ଓଡ଼ିଶାର ସ୍କୁଲ ବିଭାଗର ଇନ୍‌ସପେକ୍‌ଟର । କେଡ଼େ ବଡ଼ ଚାକିରି, କେତେ ମର୍ଯ୍ୟାଦା । ସେ ଛତାଧରି ପଛେ ପଛେ ଚାଲିଥିବାର ଦେଖି ଲୋକେ ବିସ୍ମିତ ହୋଇଗଲେ । ପଚାରିବାରୁ କହିଲେ, ମୁଁ ବାଙ୍ଗାଲୀଙ୍କୁ ସୁଦ୍ଧା ଏତେ ଭକ୍ତି କରି ନ ଥାନ୍ତି । ମୋର ଭାଗ୍ୟ, ମୁଁ ଜଣେ ବଡ଼ ପଣ୍ଡିତଙ୍କୁ ଖରାରୁ ରକ୍ଷା କରୁଛି । ସବୁବେଳେ ଏମିତି ସୁଯୋଗ ମିଳେନା ।"

—୮—

କଥାରେ ଅଛି, 'ଗୁଣୀ ଚିହ୍ନେ ଗୁଣିଆଁ' । ରାଧାନାଥ ଗୁଣୀ ଲୋକଙ୍କୁ ଆଦର କରୁଥିଲେ । କେନ୍ଦ୍ରାପଡ଼ାର ଅର୍ଜୁନପୁର ଗ୍ରାମରେ ହରିଚରଣ ମିଶ୍ର ନାମକ ଜଣେ ଲୋକ ଥିଲେ । ସେ କେନ୍ଦ୍ରାପଡ଼ା ହାଇସ୍କୁଲର ତଳ ଶ୍ରେଣୀରେ ପଢୁଥିଲେ । ପଢ଼ା ଛାଡ଼ିଦେଇ ଘରେ ରହିଲେ । ମାଟ୍ରିକ୍ ପାସ୍ କରି ନାହାନ୍ତି । ସେ ଚେଷ୍ଟାରେ

ଇଂରାଜୀ, ଜର୍ମାନ, ଫ୍ରେଞ୍ଚ୍, ଇଟାଲିଆନ୍, ଲଟିନ ଓ ଗ୍ରୀକ ଭାଷା ପଢ଼ି ବଡ଼ ପଣ୍ଡିତ ହୋଇଥିଲେ । କଟକ ରେଭେନ୍ସା କଲେଜରେ ଦର୍ଶନ ଶାସ୍ତ୍ର ପଢ଼ାଇବା ପାଇଁ ଜଣେ ପ୍ରଫେସର ବା ଅଧ୍ୟାପକ ଦରକାର ହେଲେ । ରାଧାନାଥ ହରଚରଣଙ୍କୁ ସେହି କାର୍ଯ୍ୟରେ ରଖିବା ପାଇଁ କଲେଜର ପ୍ରିନ୍ସପାଲଙ୍କୁ ଅନୁରୋଧ କଲେ । ସେ ରାଧାନାଥଙ୍କ କଥା ଅନୁସାରେ ତାଙ୍କୁ ଛଅମାସ ପାଇଁ ରଖିଲେ । ହରଚରଣ ସଙ୍ଗରେ ଗାମବାଟୁଆ ନେଇ କଲେଜକୁ ଯାନ୍ତି । ସେ ଯେତେବେଳେ ଦର୍ଶନ ଶାସ୍ତ୍ର ଭଳି କଠିନ ବିଷୟ ପଢ଼ାଉଥାନ୍ତି, ଛାତ୍ରମାନେ ତାଙ୍କର ଜ୍ଞାନ ଦେଖି ବିସ୍ମିତ ହୋଇଯାନ୍ତି ।

— ୯ —

ରାଧାନାଥ ଦିନେ ଗୋଟିଏ ଡ଼ାକ ବଙ୍ଗଳାରେ ରହିଲେ । ବଙ୍ଗଳାର ଚଉକିଦାର ରୋଗରେ ପଡ଼ିଥିବାରୁ ତାହାର ସ୍ତ୍ରୀ ଆସି ସମସ୍ତ କାର୍ଯ୍ୟ ତୁଲେଇଲା । ବାବୁ କେତେକ ଘଣ୍ଟା ସେଠାରେ ରହି ଭିଜିଟ୍ ବହିରେ ଦସ୍ତଖତ କରି ଦିବାକୁ ବସିଲେ । ସେତେବେଳେ ସ୍ତ୍ରୀଟି ମନ ଦୁଃଖରେ କହିଲା, "ମୋର ସ୍ୱାମୀ ରୋଗରେ ପଡ଼ିଥିବାରୁ ହଜୁରଙ୍କ ପାଖରେ ହାଜର ହୋଇ ପାରିଲେ ନାହିଁ । ଆପଣ ଯଦି ଦୋଷ କ୍ଷମା ନ ଦେଇ ବହିରେ କିଛି ଖରାପ କରି ଲେଖି ଦିଅନ୍ତି, ତେବେ ତାଙ୍କର ଚାକିରି ଚାଲିଯିବ । ଆମେ ସମସ୍ତେ ଖାଇବାକୁ ନ ପାଇ ମରିବୁ ।" ବାବୁ ଏକଥା ଶୁଣି ତାକୁ ନଗଦ ଗୋଟାଏ ଟଙ୍କା ଦେଲେ ଏବଂ କହିଲେ, "ନାହିଁ ନାହିଁ । ମୋ କଲମରେ ତାହାର କିଛି କ୍ଷତି ହେବନାହିଁ । ତୁମେ ଭୟ କର ନା ।"

— ୧୦ —

ରାଧାନାଥ ପାଲ୍‌କିରେ ବସି ମଫସଲ ଗସ୍ତରେ ଯାଉଥିଲେ । ଗୁକର, ପୁହାରୀ ଓ ଚପରାଶିମାନଙ୍କୁ ପାଲକି ପଛରେ ଧାଇଁବାକୁ ପଡ଼େ । ଥରେ ସେ ଖୋରଧାରୁ ଫେରି ପୁବ ଶଶିଭୂଷଣଙ୍କୁ କହିଲେ, "ଏଥର ପାଲ୍‌କି ବଦଳରେ ବଳଦ ଗାଡ଼ିରେ ଗସ୍ତ କରିବାକୁ ଯିବ ।" ଶଶିଭୂଷଣ ତାହାର କାରଣ ପଚାରିବାରୁ ସେ କହିଲେ, "ପ୍ରତ୍ୟେକ ବିଷୟରେ ସୁଖକୁ ଦୁଇଭାଗ କରିନେବା ଉଚିତ । ମୁଁ ସୁଖରେ ଯିବି, ମାତ୍ର ଗୁକର, ପୁହାରୀ ଓ ଚପରାସିମାନେ କଷ୍ଟ ପାଇବେ । ଏହା ଅସୁନ୍ଦର କଥା । ଖଣ୍ଡିଏ ପାଲ୍‌କି ପିଛା ଯେତେ ଖରଚ ହେଉଛି, ସେଥିରେ ଦୁଇ ଖଣ୍ଡ ବଳଦ ଗାଡ଼ି ହୋଇ ପାରିବ । ମୁଁ ଖଣ୍ଡିକରେ ବସିବି । ଅପର ଖଣ୍ଡିକରେ ସେମାନେ ବସି ପାରିବେ ।"

— ୧୧ —

ଶ୍ରୀ ନୀଳମଣି ବିଦ୍ୟାରତ୍ନ ବାମଣ୍ଡାରେ 'ହିତୈଷିଣୀ' ପତ୍ରିକାର ସମ୍ପାଦକ ଥିଲେ । ଅଙ୍କକୁ ଗୁହାଁ ବ୍ୟୟ ନ କରିବା ତାଙ୍କର ଗୋଟାଏ ବଡ଼ ଦୋଷ । ବାମଣ୍ଡାର ରାଜା ସୁଚଳଦେବ ତାଙ୍କୁ ଏହି ଦୋଷ ଛାଡ଼ିବା ପାଇଁ ଅନେକ ଥର ବୁଝାଇଛନ୍ତି । ମାତ୍ର ତାଙ୍କର ସେ ଦୋଷ ଗଲା ନାହିଁ । ଥରେ ସେ ପତ୍ରିକା ଫଣ୍ଡରୁ ତିନିଶ ଟଙ୍କା ଖରଚ କରି ପକାଇଥିଲେ । ରାଜା ତାଙ୍କୁ କହିଲେ, 'ଆପଣ ଏକ ସପ୍ତାହ ଭିତରେ ଏହି ଟଙ୍କା ଜମା କରନ୍ତୁ । ନଚେତ୍ ଆପଣଙ୍କୁ ରାଜଦଣ୍ଡ ଭୋଗିବାକୁ ପଡ଼ିବ ।' ବିଦ୍ୟାରତ୍ନଙ୍କୁ ଅଉ କିଛି ବୁଦ୍ଧି ଦିଶିଲା ନାହିଁ । ସେ ରାଧାନାଥଙ୍କୁ ପତ୍ରଦ୍ୱାରା ଜଣାଇଲେ, "ଏକ ସପ୍ତାହ ମଧ୍ୟରେ ତିନିଶ ଟଙ୍କା ଦେଇ ନ ପାରିଲେ ମୁଁ କାରାଦଣ୍ଡ ଭୋଗ କରିବି । ଆପଣ ମୋତେ ରକ୍ଷା କରନ୍ତୁ ।" ରାଧାନାଥ ପରର ଦୁଃଖ ଦେଖି ପାରନ୍ତି ନାହିଁ । ସେ ପତ୍ର ପାଇଲା

ମାନବକେ ମନିଅର୍ଡ଼ର ଦ୍ୱାରା ତାଙ୍କ ପାଖକୁ ତିନିଶ ଟଙ୍କା ପଠାଇ ଦେଲେ ।

—୧୨—

ଥରେ ରାତ ନଅଟା ବେଳେ ରାଧାନାଥ ଗୋଟିଏ ଟେଲିଗ୍ରାମ ପାଇଲେ ! ସେଥିରୁ ସେ ଜାଣିଲେ ଯେ ତାଙ୍କର ଜଣେ ବନ୍ଧୁ ଅଠର ପଚିଶ ଟଙ୍କା ଲାଗି ଜେଲ୍ ଯିବାକୁ ବସିଛନ୍ତି । ବନ୍ଧୁ ଜଣଙ୍କ ଅନ୍ୟ କେଉଁଠାରୁ ଏତେ ଟଙ୍କା ପାଇପାରୁ ନାହାନ୍ତି । ସେ ତତ୍କ୍ଷଣାତ୍ ଟେଲିଗ୍ରାମ ମନିଅର୍ଡ଼ର ଦ୍ୱାରା ଉକ୍ତ ଟଙ୍କା ବନ୍ଧୁଙ୍କ ପାଖକୁ ପଠାଇଦେଲେ ।

—୧୩—

ରାଧାନାଥ ବଙ୍ଗଳା ପ୍ରଦେଶରେ ବର୍ଦ୍ଧମାନ ବିଭାଗର ଇନ୍‌ସପେକ୍‌ଟର ଥିବାବେଳେ ହାବଡ଼ା ହାଇସ୍କୁଲ୍ ଦେଖିବାକୁ ଯାଇଥିଲେ । ନୂଆ ଇନ୍‌ସ୍ପେକ୍‌ଟର ଆସିବେ ବୋଲି ସ୍କୁଲରେ ଫାଟକ ତିଆରି ହୋଇ ପତାକା ଉଡ଼ାଯାଇଥିଲା ଆସିଷ୍ଟାଣ୍ଟ ଇନ୍‌ସ୍ପେକ୍‌ଟର ଆଗରୁ ଆସି ଅପେକ୍ଷା କରିଥିଲେ । ଦିନ ଦୁଇ ପ୍ରହର ସମୟରେ ରାଧାନାଥ ଖଣ୍ଡିଏ ସାମାନ୍ୟ ଘୋଡ଼ାଗାଡ଼ିରେ ଯାଇ ସ୍କୁଲରେ ପହଞ୍ଚିଲେ । ସେ ବାରଣ୍ଡାରେ ଠିଆ ହୋଇ ନାସ ଶୁଙ୍ଘିବା ସମୟରେ ସ୍କୁଲର ପଣ୍ଡିତ ସେହି ବାଟେ ଯାଉଥିଲେ । ଜଣେ ଅଜଣା ଲୋକ ଦେଖି ପଣ୍ଡିତେ ତାଙ୍କୁ ନାସ ମାଗିଲେ ଓ ସେ ମଧ୍ୟ ଦେଲେ । ଏହି ସମୟରେ ହେଡ୍‌ମାଷ୍ଟର ଇତ୍ୟାଦି ଖବର ପାଇ ତାଙ୍କୁ ପାଛୋଟି ଆଣିବାକୁ ଗଲେ । ଦେଖିଲେ ଇନ୍‌ସ୍ପେକ୍‌ଟରଙ୍କ ବେଶ ଭୂଷାରେ ଟିକିଏ ହେଲେ ଆଡ଼ମ୍ବର ନାହିଁ । ପଣ୍ଡିତେ ଭାରି ଡରିଗଲେ, ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ରାଧାନାଥ ପଣ୍ଡିତଙ୍କୁ କହିଲେ

"ଆପଣ କଣ୍ଟ ଅନ୍ୟାୟ କର ନାହାନ୍ତି । କାହିଁକି ଭୟ କରୁଛନ୍ତି ?
ଏହାପରେ ସେ ସମସ୍ତଙ୍କ ସହିତ ସରଳ ଭାବରେ ଆଳାପ
କରିବାକୁ ଲାଗିଲେ ।

—୧୪—

ରାଧାନାଥ ଥରେ ଏକଦିନେ ହାବଡ଼ା ହାଇସ୍କୁଲ ଦେଖିବାକୁ
ଯାଇଥିଲେ । ସେ ଫାଷ୍ଟକ୍ଲାସରେ ବସି ହେଡ଼ ମାଷ୍ଟରଙ୍କୁ
ପଢ଼ାଇବାକୁ ଆଦେଶ ଦେଲେ । ଶିକ୍ଷକ ଓ ଛାତ୍ରମାନେ ଜାଣିଥିଲେ
ଇନ୍‌ସ୍ପେକ୍ଟର ଜଣେ ଓଡ଼ିଆ ଓ ଏମ୍.ଏ. ପାସ କରିଛନ୍ତି । ତେଣୁ
ସମସ୍ତେ ତାଙ୍କ ପ୍ରତି ଟିକେ ବେଖାତିର ଭାବ ପ୍ରକାଶ କଲେ ।
ରାଧାନାଥ ନିଜେ ଛାତ୍ରମାନଙ୍କୁ ପ୍ରଶ୍ନ ପଚାରିଲେ ଏବଂ କଠିନ
ବିଷୟମାନ ଅତି ସୁନ୍ଦର ଭାବରେ ବୁଝାଇ ଦେଲେ । ସମସ୍ତେ
ତାଙ୍କର ପାଣ୍ଡିତ୍ୟ ଦେଖି ବାଧା ହୋଇଗଲେ ଏବଂ ମନେ କଲେ,
ସେ କଦାପି ଓଡ଼ିଆ ନୁହନ୍ତି—ବଙ୍ଗାଳୀ । ରାଧାନାଥଙ୍କ ସଙ୍ଗରେ
ତାଙ୍କର ଅତିପ୍ରିୟ ଚାକର ଆନନ୍ଦ ଦାସ ଥାଏ । ସମସ୍ତେ ଯାଇଁ
ତାଙ୍କୁ ପଚାରିଲେ, ଇନ୍‌ସ୍ପେକ୍ଟର ସାହେବ ଓଡ଼ିଆ ନା ବଙ୍ଗାଳୀ ?
ରାଧାନାଥ ନିଜକୁ ବଙ୍ଗାଳୀ ନ କହି ଓଡ଼ିଆ ବୋଲି କହୁଥିଲେ ।
ଚାକର, ପୂଜାରୀ ଓ ଚପରାସୀମାନଙ୍କ ପ୍ରତି ତାଙ୍କର କଡ଼ା ଆଦେଶ
ଥାଏ ଯେ ତାଙ୍କ ଜାତି କଥା କେହି ପଚାରିଲେ ଓଡ଼ିଆ ବୋଲି
କହିବାକୁ ହେବ । ସେମାନେ ଆନନ୍ଦଠାରୁ ଶୁଣିଲେ ଯେ ରାଧାନାଥ
ଜଣେ ଓଡ଼ିଆ । ତେଣୁ ସେମାନେ ବିସ୍ମିତ ହୋଇଗଲେ ।

—୧୫—

ଥରେ ରାଧାନାଥଙ୍କ କଟକ ବସାରୁ ଅନେକ ଦ୍ରବ୍ୟ
ଚୋରିହେଲା । ଚୋରିଯିବା କଥା ବସାରେ କେହି ଜାଣି ନ ଥିଲେ ।

ପର ଦିନ ପୁଲିସ ଯେତେବେଳେ ଚୋରି ଜିନିଷ ସଙ୍ଗରେ ଚୋରକୁ ଘେନି ତାଙ୍କ ବସାରେ ପହଞ୍ଚିଲା, ସେତେବେଳେ ଯାଇ ସମସ୍ତେ ଚୋରି ହୋଇଛି ବୋଲି ଜାଣିଲେ । ସେହି ଚୋରଟିକୁ ମାତ୍ର ବର୍ଷ ଜେଲ୍ ହେଲା । ତାହା ଶୁଣି ରାଧାନାଥ କହିଲେ, "ଆହା, ଲୋକଟାର ଏତେଦିନ ଜେଲ ହେଲା । ମୋତେ ପୂର୍ବରୁ ମାଗି ଥିଲେ ମୁଁ କିଛି ଦେଇଥାନ୍ତି । ଚୋରକର ସୁବିଧା ଅଣା ମେଣ୍ଟିଲା ନାହିଁ । ତହିଁରେ ପୁଣି ମିଆଦ ପାଇଲା ସାତ ବର୍ଷ । ଆଜିଠାରୁ ଆମ ଘରେ ପାଞ୍ଚଶହ ଟଙ୍କାରୁ କମ୍ ମୂଲ୍ୟର ଜିନିଷ ଚୋରିହେଲେ ଆମେ ପୁଲିସକୁ ଜଣାଇବା ନାହିଁ । ସେଥିଯୋଗୁଁ ଅନେକ ଲୋକ ଅନେକ କଷ୍ଟ ଭୋଗ କରନ୍ତି ।"

— ୧୭ —

ଥରେ ରାଧାନାଥ କଟକର ଗୋଟିଏ ଦୋକାନରୁ ଏକଯୋଡ଼ା ମୋଜା କିଣିଲେ । ଦୋକାନୀର କହିବା ଅନୁସାରେ ତାହାର ମୂଲ୍ୟ ଟଙ୍କାଟିଏ ଦେଇ ଚାଲି ଆସିଲେ । ତା ପରେ ଦୋକାନୀ କଣ ଭାବି ତା ଚାକରକୁ ଛ' ଅଣା ପଇସା ଦେଇ କହିଲା, "ଯା, ରାଧାନାଥ ବାବୁ ଯାଉଥିବେ ତାଙ୍କୁ ଦେଇ ଆସିବୁ ।" ସେ ଯାଇ ତାଙ୍କୁ ପଇସା ଦେବାରୁ ସେ କହିଲେ, ଦୋକାନୀ ଲାଭ ସକାଶେ ଦୋକାନ କରିଛନ୍ତି । ସେ ଏତିକ ଲାଭ ନିଅନ୍ତୁ । ମୁଁ ଏ ପଇସା ନେବି କାହିଁକି ?" ଚାକରଟି କହିଲା, "ମୋଜାର ମୂଲ୍ୟ ଆଠଅଣା, ଲାଭ ଦୁଇଅଣା ଗ୍ରାହକ ମାନେ ସଉଦା କିଣିଲାବେଳେ ଦାମ୍ କଟାକଟି କରନ୍ତି । ସେ ଏକ ଟଙ୍କା କହିଥିଲେ । ଆପଣ କିଛି ନ କାଟି ପୂରା ଟଙ୍କାଟିଏ ଦେଇଦେଲେ । ଆପଣ ଚାଲି ଆସିବା ପରେ ତାଙ୍କୁ ବଡ ଖରାପ ଲାଗିଲା । ତେଣୁ ସେ ଛ'ଅଣା ଫେରାଇ ଦେଇ ଅଛନ୍ତି । ରାଧାନାଥ ଆଶ୍ଚର୍ଯ୍ୟ ହୋଇ କହିଲେ, 'ବେପାର ବ୍ୟବସାୟରେ

ଉଣ ସବୁବେଳେ ମିଛ କଥା କହିବାକୁ ହୋଇଥାଏ ?" ଗୃକରଟି ତାଙ୍କର ଏହି ସରଳ ଢଙ୍ଗ ଦେଖି ମନେ ମନେ ଭାରି ପ୍ରଶଂସା କଲା । ସେଦିନ ସେ ଆଉ ପଇସା ରଖିଲେ ନାହିଁ । ଦୁଇ ତିନି ଦିନ ପରେ ରାଧାନାଥ ସେହି ଦୋକାନ ବାଟେ ଯାଉଥିଲେ । ଦୋକାନୀ ନିଜେ ଆସି ସେହି ପଇସା ଫେରାଇ ଦେବାରୁ ସେ ତାହା ଗ୍ରହଣ କଲେ ।

—୧୭—

ତାଙ୍କର ରାମ ବେଡ଼େହେରା ନାମରେ ଗୋଟିଏ ଗୃକର ଥିଲା । ରାଧାନାଥ ତାକୁ ଭାରି ଭଲ ପାଉଥିଲେ । ଥରେ ଶଶିଭୂଷଣ କୌଣସି ଦୋଷ ଲାଗି ତାକୁ ଗୃରିଅଣା ଜୋରିମାନା କଲେ । ରାଧାନାଥ ତାହା ଶୁଣି ପୁଣିର ଅଜଣାରେ ତାକୁ ଗୋଟିଏ ଟଙ୍କା ଦେଇଥିଲେ ।

—୧୮—

ଦିନେ ରାଧାନାଥ ବୁଲି ବୁଲି ରୋଷେଇ ଘରକୁ ଗୃଲିଗଲେ । ଦେଖିଲେ ଦୁଇ ପ୍ରକାର ଭାତ ରନ୍ଧାଯାଇଛି । ପୂଝାରୀକୁ ପଗ୍ଭରିବାରୁ ସେ କହିଲା, "ସରୁ ଭାତ ଆପଣଙ୍କ ପାଇଁ ଓ ମୋଟା ଭାତ ଗୃକରମାନଙ୍କ ପାଇଁ ରନ୍ଧା ଯାଇଛି ।" ରାଧାନାଥ କହିଲେ, "ଯେଉଁଦିନ ଗୋଟାଏ ପ୍ରକାର ଭାତ ରନ୍ଧା ନ ହେବ, ସେଦିନ ମୁଁ କେବଳ ମୋଟା ଭାତ ଖାଇବି ।"

—୧୯—

ଦିନେ ଜଣେ ଗରିବ ବିଧବା ରାଧାନାଥଙ୍କୁ ଦେଖା କରିବାକୁ ଆସିଲା । ସେ ଚିରିଣ୍ଡା ଓ ମଇଳା ଲୁଗା ପିନ୍ଧିଥାଏ । ଚପରାସି ତାକୁ ଫେରାଇ ଦେବାରୁ ସେ ବଡ଼ ପାଟିରେ 'ବାବୁ' 'ବାବୁ' ବୋଲି

ଡାକ ଦେଲା । ରାଧାନାଥ ତାକୁ ପାଖକୁ ଡକାଇ ବୁଝିଲେ ଯେ ତାହାର ଦୁଇବଖରା ଘର ଓ ଗୋଟିଏ ଢେଙ୍କି ପୋଡ଼ି ଯାଇଛି । ଛଅ ସାତ ଟଙ୍କା ପାଇଲେ ସେ ବଖରାଏ ଘର କରନ୍ତା ଓ ଗୋଟିଏ ଢେଙ୍କି କିଣନ୍ତା । ରାଧାନାଥ ସେତେବେଳେ ଅଫିସରେ ଥିଲେ । କହିଲେ "ମୋ ପାଖରେ ଏଠାରେ କିଛି ନାହିଁ । ମୁଁ ଏହି ଚିଠି ଖଣ୍ଡିକ ମୋ ପୁଅ ପାଖକୁ ଲେଖିଦେଲି । ତୁମେ ମୋ ବସାକୁ ଯାଇ ତାଙ୍କୁ ଏ ଚିଠି ଦେଲେ ସେ ତୁମକୁ ଟଙ୍କା ଦେବେ ।" ଶଶିଭୂଷଣ ଲେଖା ଅନୁସାରେ ତାହାକୁ ଦଶ ଟଙ୍କା ଦେଲେ । ବିଧବାଟି କହିଲା, "ମୁଁ ତ ଛଅ ସାତ ଟଙ୍କା କହିଥିଲି, ବେଶୀ କାହିଁକି ନେବି ? ମୋର ବଖରାଏ ଘର ଓ ଗୋଟିଏ ଢେଙ୍କି ମାତ୍ର ଦରକାର ।" ଶଶିଭୂଷଣ ତାକୁ ଦଶ ଟଙ୍କା ନେବାକୁ ବହୁତ କହିଲେ । ମାତ୍ର ସେ ତାହା ନ ନେଇ ପୁଣି ରାଧାନାଥଙ୍କ ପାଖକୁ ଗଲା । ରାଧାନାଥ ତାହାଠାରୁ ସବୁ କଥା ଶୁଣି ଭାରି ଖୁସି ହୋଇଥିଲେ . ଗରିବ ହେଲେହେଁ ତାହାର ଲୋଭ ନ ଥିବାର ଦେଖି ସେ ଆଶ୍ଚର୍ଯ୍ୟ ମଣିଲେ । କହିଲେ, "ମୋ ଲେଖିବା ଭୁଲ ହୋଇଗଲା । ପୁଣି ଖଣ୍ଡିଏ ଚିଠି ଲେଖୁଛି । ତୁମେ ପୁଣି ଏ ଚିଠି ନେଇଯାଅ ।" ଏଥର ଚିଠିରେ ତାକୁ କୋଡ଼ିଏ ଟଙ୍କା ଦେବା ପାଇଁ ଲେଖା ଯାଇଥିଲା । ସେ ବିଧବାଟିକୁ କହିଲେ, "ତୁମେ ଧର୍ମର ସଳଖ ବାଟରେ ଚାଲିବାକୁ ଶିଖିଛ । ଏଣୁ ମୁଁ ତୁମ୍ଭଙ୍କୁ ତୁମ୍ଭ ମାଗୁଣିଠାରୁ ବେଶି ଦେଲି । ଏହି ଟଙ୍କାରେ ଦୁଇବଖରା ଘର ତିଆରି କରିବ । ଗୋଟିଏ ବଖରାରେ ନିଜେ ରହି ଢେଙ୍କିଟି ରଖିବ । ଅନ୍ୟ ବଖରାଟି ଭଡ଼ା ଲଗାଇ କିଛି ପାଇବ ।" ବିଧବା ଶଶିଭୂଷଣଙ୍କଠାରୁ କୋଡ଼ିଏ ଟଙ୍କା ପାଇଲା ଓ ଆଶୀର୍ବାଦ କରି ଘରକୁ ବାହୁଡ଼ିଲା ।

— ୨୦ —

ରାଧାନାଥ ବାମଣ୍ଡା ଯାଉଥିଲେ । ସେ ଜଣେ ମହାପଣ୍ଡିତ, ବଡ଼ କବି ଓ ସରକାରଙ୍କ ପ୍ରଧାନ କର୍ମଚାରୀ ଏବଂ ମହାରାଜା ତାଙ୍କୁ ଆମନ୍ତ୍ରଣ କରି ଆଣୁଛନ୍ତି—ଏହି କଥା ରାଜ୍ୟରେ ଚହଳ ପଡ଼ିଗଲା । ତାଙ୍କୁ ଦେଖିବା ପାଇଁ ପ୍ରତ୍ୟେକ ଚଟିରେ ଶହ ଶହ ଲୋକ ଜମା ହେଲେ । ରାଧାନାଥ ସେମାନଙ୍କ ସହିତ ଜଣେ ସାଧାରଣ ଲୋକ ପରି ମିଶି ଝୁସି ଗପ କଲେ । ଲୋକମାନେ ତାହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ତାଙ୍କର ପ୍ରଶଂସା ଗାଇବାକୁ ଲାଗିଲେ । ବାଇଧର ଗୌଡ଼ ବୋଲି ଜଣେ ଅତି ବୁଢ଼ା ଥିଲେ । ସେ ବହୁ ପରିଶ୍ରମ କରି ଧନ ବଢ଼ାଇ ଥିଲେ । ତାଙ୍କର ବହୁତ ଗୋରୁ ଓ ମଇଁଷି ଥିଲେ । ତାହାର ଦ୍ୱାରା ସେ ଗରିବରୁ ବଡ଼ଲୋକ ହୋଇଥିଲେ । ରାଧା ନାଥ ଏ କଥା ଜାଣି ତାଙ୍କୁ ପାଖକୁ ଡାକିଲେ ଓ ଆପଣା ପାଖରେ ବସାଇ ନାନା କଥାବାର୍ତ୍ତା କଲେ । ରାଧାନାଥ ତାଙ୍କୁ 'ଅପଣି' ବୋଲି କହୁଥିଲେ । 'ଏହି କଥା ସାରା ବାମଣ୍ଡାରେ' ରାଷ୍ଟ୍ର ହୋଇଗଲା । ସମସ୍ତେ ତାଙ୍କୁ ଜଣେ ମହାତ୍ମା ବୋଲି କହିବାକୁ ଲାଗିଲେ ।

— ୨୧ —

ଷ୍ଟିମର୍‌ରେ ବାଲେଶ୍ୱର ଯିବା ବାଟରେ ଜଣେ ଲୋକ ମଝିରେ ନଦୀରେ ଷ୍ଟିମର୍ ଉପରୁ ଖସି ପଡ଼ିଲା । ସମସ୍ତେ ପାଟି କରିବାକୁ ଲାଗିଲେ । ରାଧାନାଥବାବୁ କେବିନ୍ ଭିତରୁ ବାହାରି ଆସି ଦେଖିଲେ ପାଣିରେ ପଡ଼ିଥିବା ଲୋକଙ୍କୁ ବଞ୍ଚାଇବାକୁ କାହାର ଚେଷ୍ଟା ନାହିଁ । ତହୁଁ ସେ ଚିତ୍କାର କରି କହିଲେ, "ଯେଉଁ ଲୋକ ତାହାକୁ ପାଣି ଭିତରୁ ଉଠାଇ ଆଣିବ, ତାକୁ ମୁଁ ଦଶଟଙ୍କା ଦେବ ।" ଏହା ଶୁଣିବା ମାତ୍ରେ ଦୁଇଜଣ ଖଲାସି ପାଣିକୁ ଡେଇଁ ପଡ଼ିଲେ ଓ ତାହାକୁ

ପାଣିରୁ ଉଠାଇ ଅଣିଲେ । ରାଧାନାଥ ସେହି ଦୁଇଜଣଙ୍କୁ ଦୁଇଖଣ୍ଡ ଶୁଖିଲା ଲୁଗା ଓ ଦଶଟି ଟଙ୍କା ଦେଲେ ।

— ୨୨ —

ଦିନେ ଦୁଇଜଣ କଂସେଇ ଗୋଟିଏ ହିଡା ଗୋରୁକୁ ହାଣିବା ପାଇଁ କଂସେଇଖାନାକୁ ନେଇ ଯାଉଥିଲେ । ରାଧାନାଥ ସେମାନଙ୍କୁ ପଚାରିଲେ, "ଏ ଗୋରୁକୁ ମାରିଲେ କେତେ ଟଙ୍କାର ମାଉଁସ ପାଇବ ?" ସେମାନେ ଛଅ ଗୋଟି ଟଙ୍କା ମିଳିବ ବୋଲି କହିଲେ । ତହୁଁ ସେ କଂସେଇ ହାତରେ ଛଅଟି ଟଙ୍କା ଦେଇ ଗୋରୁଟି କିଣିଲେ ଓ ତାହାକୁ ଗୋଶାଳାକୁ ପଠାଇଦେଲେ ।

—୨୩—

ଦିନେ ନଅ ଦଶ ବର୍ଷର ଗୋଟିଏ ଗଉଡ଼ ପିଲା ଗୋଟିଏ ପୋଖରୀରେ ପହଁରୁ ପହଁରୁ ଗଭୀର ପାଣିରେ ବୁଡ଼ି ଯାଉଥିଲା । କୂଳରେ ଅନେକ ଲୋକ ଠିଆ ହୋଇଥିଲେ । ମାତ୍ର କେହି ପିଲାଟିକୁ ପାଣିରୁ ଉଠାଇ ଅଣିବାକୁ ସାହସ କରୁ ନ ଥିଲେ । ରାଧାନାଥ ଦୈବାତ୍ ସେଠାରେ ପହଞ୍ଚିଲେ । କହିଲେ, "ଏ ପିଲାକୁ ଯଦି କେହି ବଞ୍ଚାଇ ପାରେ, ତେବେ ମୁଁ ପାଞ୍ଚଟଙ୍କା ପୁରସ୍କାର ଦେବି ।" ଜଣେ ମୁସଲମାନ ଯୁବକ ହଠାତ୍ ପାଣିକୁ ଡେଇଁ ପଡ଼ିଲା ଓ ବୁଡ଼ିଯାଉଥିବା ପିଲାକୁ ଉଠାଇ ଅଣିଲା । ରାଧାନାଥ ପିଲାଟିକୁ ନେଇ ତାହାର ବାପା ମାଆଙ୍କ ପାଖରେ ଛାଡ଼ିଦେଲେ । ଘରକୁ ଆସି ସେହି ମୁସଲମାନ ଯୁବକକୁ ପାଞ୍ଚଟି ଟଙ୍କା ଓ ଏକ ସେର ମିଠାଇ ପୁରସ୍କାର ଦେଲେ ।

—୨୪—

ଦିନେ ଚାରି ଜଣ ଭିକାରୀ ବାଟରେ ରାଧାନାଥଙ୍କୁ କିଛି ଖାଇବାକୁ ମାଗିଲେ । ସେ କହିଲେ, "ଏଠାରେ କଅଣ ଦେବି ?

ମୋ ଘରକୁ ଚାଲ ।" ସେମାନେ ରାଧାନାଥଙ୍କ ସଙ୍ଗରେ ଆସିଲେ । ଘରେ ନାନାପ୍ରକାର ଜିନିଷ ତିଆରି ହେଲା । ଭିକାରୀମାନେ ଅତି ଆଦରରେ ପେଟପୂରି ଖାଇ ଆନନ୍ଦରେ ଚାଲିଗଲେ । ଏଥିପାଇଁ ସେ ଦିନ ପାଞ୍ଚ ଟଙ୍କା ପର୍ଯ୍ୟନ୍ତ ଖରଚ ହୋଇଥିଲା ।

—୨୫—

କଟକର ରାଉସାପାଟଣାରେ ଗୋଟିଏ ବୁଢ଼ୀ ତାହାର ପାଞ୍ଚ ବର୍ଷର ପିଲାଟି ସହିତ କୁଡ଼ିଆରେ ଥିଲା । ରାତିରେ ତା ଘରେ କିଏ ନିଆଁ ଲଗାଇଦେଲା । ବୁଢ଼ୀ ଜଣକ ପିଣ୍ଡାରେ ବସି କାନ୍ଦୁଥାଏ । ରାଧାନାଥ ତାହାର କାନ୍ଦ ଦେଖି ତରଳି ଗଲେ । ସେ ଗ୍ରାମର ଜଣେ ପ୍ରଧାନ ଲୋକକୁ ଡାକି ତାହାଠାରୁ ବୁଢ଼ୀର ସବୁ ଖବର ଶୁଣିଲେ । ବୁଢ଼ୀକୁ କହିଲେ, "ତୁମେ ଆଉ କାନ୍ଦ ନାହିଁ । ତୁମର ଘର ତିଆରି ଲାଗି ଏହି ଭଦ୍ରଲୋକଙ୍କ ହାତରେ ପଚିଶି ଟଙ୍କା ଦେଲି । ତୁମ୍ଭେ ଏହାଙ୍କଠାରୁ ଟଙ୍କା ନେଇ ଘର ତିଆରି କରିବ । ତିଆରି ସରିଲେ ମୁଁ ଆସି ଦେଖିଯିବି ।"

—୨୬—

ଦିନେ ରାଧାନାଥଙ୍କ ଘରେ ଚୋର ପଶିଥିଲା । ଚାକରମାନେ ତାକୁ ଧରି ଥାନାକୁ ନେଇ ଯାଉଥିଲେ । ସେ ତା ଶୁଣି ସେମାନଙ୍କୁ ପାଖକୁ ଡାକି ଚୋରକୁ ପଚାରିଲେ, "ତୁମେ କାହିଁକି ଚୋରି କଲ ?" ଚୋର କହିଲା, "ମୁଁ ଖାଇବାକୁ ପାଉନାହିଁ ।" ରାଧାନାଥ କହିଲେ, "ଖାଇବାକୁ ପାଇଲେ ଚୋରି କରିବ ନାହିଁ ?" ସେ କହିଲା, "ନାହିଁ"। ରାଧାନାଥ ତାକୁ ଆଉ ଥାନାକୁ ପଠାଇଲେ ନାହିଁ । ତାକୁ କିଛି ଖାଇବା ପଦାର୍ଥ ଓ କେତୋଟି ଟଙ୍କା ଦେଇ କହିଲେ, "ପ୍ରତି ମାସ ପହିଲରେ ଆସି ଆମ ଘରୁ ପାଞ୍ଚ ଟଙ୍କା କରି ନେଇ ଯାଉଥିବ । ଆଉ

ଚୋର କହିବ ନାହିଁ ।" ତା ପରେ ସେ ଆଉ ଚୋର କଲା ନାହିଁ । ବାବୁଙ୍କଠାରୁ ଟଙ୍କା ପାଇ ଖଣ୍ଡିଏ ଦୋକାନ କରିବାରୁ ତାହାର ଅବସ୍ଥା ବଦଳିଗଲା ।

—୨୭—

ରାଧାନାଥଙ୍କ ଶ୍ୱଶୁର ଘର ରେମୁଣାରେ । ଦିନେ ସେ ଶ୍ୱଶୁର ଘର ପିଣ୍ଡାରେ ବସି, ବାଡ଼ ଦୁଆର ବାଟେ ଅନାଇ ଖଣ୍ଡିଏ ଦରିଦ୍ର ଘର ଦେଖିଲେ । ସେଇଟି କାହାର ଘର ବୋଲି ସେ ପଚାରିଲେ । ତାଙ୍କପାଖରେ ବସିଥିବା ଜଣେ ଲୋକ କହିଲେ, "ସେ ଗୋଟିଏ ବ୍ରାହ୍ମଣ ଘର । ବ୍ରାହ୍ମଣଟି ବଡ ଦରିଦ୍ର ।" ରାଧାନାଥ କହିଲେ, 'ସେ କିଛି ଲେଖାପଢ଼ା ଜାଣନ୍ତି ?" ଉତ୍ତର ମିଳିଲା—ସେ ପୁରୁଣା ଧରଣର କିଛି ପଢ଼ିଛନ୍ତି । ତହୁଁ ରାଧାନାଥ ତାଙ୍କୁ ଡାକିଲେ ଓ ତାଙ୍କ ସହ କିଛି କଥାବାର୍ତ୍ତା କରି ତାଙ୍କୁ ଗୋଟିଏ ପାଠଶାଳାରେ ଶିକ୍ଷକ କାମ ଦେଲେ । ସେହି ବ୍ରାହ୍ମଣର ଗୋଟିଏ ପୁଅ ଥିଲା । ରାଧାନାଥ ତାଙ୍କୁ କହିଲେ, "ପୁଅଟିକୁ ନୂଆ ଧରଣର ବିଦ୍ୟାଳୟରେ ପଢ଼ାନ୍ତୁ । ମୁଁ ତାହାର ସବୁ ବନ୍ଦୋବସ୍ତ କରି ଦେଉଛି ।" ବ୍ରାହ୍ମଣର ପୁତ୍ର ରାଧାନାଥଙ୍କ ସାହାଯ୍ୟରେ ପଢ଼ି ପାସ୍ କରିବା ପରେ ସେ ତାଙ୍କୁ ସେଠା ଭଣ୍ଡାରକୁଲର ସ୍କୁଲରେ ଶିକ୍ଷକ କାର୍ଯ୍ୟରେ ନିଯୁକ୍ତ କରିଥିଲେ । ସେ ସୁଖରେ ଦିନ କଟାଇ ନିଜ ପୁଅକୁ ବି. ଏ. ପର୍ଯ୍ୟନ୍ତ ପଢ଼ାଇଥିଲେ ।

— ୨୮ —

ଦିନେ କେଦାରପୁର ଗ୍ରାମର ଜଣେ ଭଦ୍ରଲୋକ ରାଧାନାଥଙ୍କ ପାଖକୁ ଆସିଥିଲେ । ତାଙ୍କୁ ଗ୍ରାମର ପ୍ରତ୍ୟେକ ଲୋକସମ୍ବନ୍ଧରେ ପଚାରୁ ପଚାରୁ ରାଧାନାଥ କହିଲେ, "ଅମୁକ ମୋର ପ୍ରିୟ, ସେ

ପିଲାଦିନେ ମୋ ସାଙ୍ଗରେ ଗୁରୁଶାଳୀରେ ପଢ଼ୁଥିଲା । ସେ କିପରି ଅବସ୍ଥାରେ ଅଛି ?" ଭଦ୍ରଲୋକ କହିଲେ, "ସେ ବଡ଼ ଦୁଃଖରେ ଅଛି ।" ଏହାଶୁଣି ରାଧାନାଥ ସେହି ଲୋକଟିକୁ ସେହି ଦିନଠାରୁ ମାସିକ ଦୁଇ ଟଙ୍କା ଲେଖାଏଁ ସାହାଯ୍ୟ ଦେବାକୁ ଲାଗିଲେ ।

— ୨୯—

କେଦାରପୁର ଗ୍ରାମର ଶେଷ ମୁଣ୍ଡରେ ଗୋଟିଏ ପୋଖରୀ ଥିଲା । ତାହାକୁ ଲାଲା ପୋଖରୀ କହନ୍ତି । ରାଧାନାଥ ଛାତ୍ରଦିନ ସାଙ୍ଗ ପଢ଼ୁଆଙ୍କ ସହିତ ସେଥିରେ ପହଁରୁଥିଲେ । ସେ ପହଁରୁ ପହଁରୁ ବୁଡ଼ି ଯାଇଥିଲେ । ସେହି ଗ୍ରାମର ଜଣେ ଲୋକ ହଳଧର ଷଡ଼ଙ୍ଗୀ ଦାନ୍ତ ଘଷୁଥିଲାବେଳେ ଦେଖି ପକାଇଲେ । ସେ ସାଙ୍ଗେ ସାଙ୍ଗେ ପାଣିକୁ ଡେଇଁ ପଡିଲେ ଏବଂ ରାଧାନାଥଙ୍କୁ ଉଠାଇ ଆଣି ତାଙ୍କର ଜୀବନ ରକ୍ଷାକଲେ । ଏହି ଷଡ଼ଙ୍ଗୀଙ୍କୁ ରାଧାନାଥ ନାନା ପ୍ରକାର ସାହାଯ୍ୟ କରୁଥିଲେ ।

ରାଧାନାଥ ତାଙ୍କର ବାଲ୍ୟଗୁରୁଙ୍କ ପୁଅ ଦୁର୍ଲ୍ଲଭ ପାଣି ଓ ଜଣେ ସାଙ୍ଗ ପଢ଼ୁଆ ବଳିଭ ବେହେରାଙ୍କୁ ସେମାନଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବାର୍ଷିକ ସାହାଯ୍ୟ ଦେଉଥିଲେ ।

—୩୦—

ରାଧାନାଥ ତାଙ୍କ ଘରୋଇ ଚାକରମାନଙ୍କୁ ପୁଅ ପରି ସ୍ନେହ କରୁଥିଲେ । ସେ ସେମାନଙ୍କର ଖାଇବା ଶୋଇବା ଇତ୍ୟାଦିରେ ଅସୁବିଧା ହେଉଥିବ ଭାବି ଦିନେ ଶଶିଭୂଷଣଙ୍କୁ କହିଲେ, "ଆମ୍ଭେମାନେ ଖାଇସାରିବା ପରେ ଚାକରମାନେ ଖାଇବା ଭଲ କଥା ନୁହେଁ । ତୁମ୍ଭେ ସେମାନଙ୍କ ପ୍ରତି ଅଧିକା ଦୃଷ୍ଟି ଦିଅ । ସେମାନେ ଆଗେ ଖାଇବେ, ତା ପରେ ଯାଇଁ ଆମେ ଖାଇବା । ଆମେ ଯେଉଁ ଜଳଖିଆ ଖାଉଁ, ସେମାନଙ୍କୁ ମଧ୍ୟ ତାହାହିଁ ଦିଆଯିବ । ସେମାନଙ୍କ

ଶୋଇବା ପାଇଁ ଖଟ, ତକିଆ ଓ ମଶାରିର ବ୍ୟବସ୍ଥା କରିଦିଅ । ସେମାନେ ରୋଗରେ ପଡ଼ିଲେ ନିଜେ ତ ବଡ଼ କଷ୍ଟ ଭୋଗିବେ । ତା' ଛଡ଼ା ଆମେ ମଧ୍ୟ ହଇରାଣ ହେବା" । ଶଶିଭୂଷଣ ପିତାଙ୍କ କଥା ଅକ୍ଷରେ ଅକ୍ଷରେ ପାଳିଥିଲେ ।

— ୩୧ —

ରାଧାନାଥ ଦିନେ ଧବଳେଶ୍ୱରର ଗୋଟିଏ ଚଷା ପିଲାକୁ ପାଖରେ ବସାଇ କଥାବାର୍ତ୍ତା କରୁଥାନ୍ତି । ତାହାର ନାମ ଭରତିଆ । ସେ ମଇଳା ଲୁଗା ଖଣ୍ଡିଏ ପିନ୍ଧିଥାଏ । ଏହି ସମୟରେ ଜଣେ ବଡ଼-ଲୋକ ସେଠାରେ ପହଞ୍ଚିଲେ । ସେ ପିଲାଟିର କୁତ୍ସିତ ବେଶ ଦେଖି ନାକ ଟେକିଦେଲେ ଓ ରାଧାନାଥ ତାହାକୁ ପାଖରେ ବସାଇବା ସୁନ୍ଦର ହେଉନାହିଁ ବୋଲି କହି ଦେବାକୁ ଯେପରି ମନ କଲେ । ରାଧାନାଥ ତାହା ଜାଣି କହି ଉଠିଲେ, "ଆସନ୍ତୁ, ଆସନ୍ତୁ । ଏହାକୁ ଘୃଣା କରିବା ଉଚିତ ନୁହେଁ । ସେ ପରା ମୋର ବନ୍ଧୁ । ଆପଣ ମୋର ବନ୍ଧୁ ହୋଇଥିବାରୁ ସେ ମଧ୍ୟ ଆପଣଙ୍କର ଜଣେ ବନ୍ଧୁ । ଭଦ୍ରଲୋକ ଏହାଶୁଣି ଅବାକ୍ । ଭାବିଲେ, ଚଷାପିଲା ବୋଲି ଘୃଣା କରିବା ପ୍ରକୃତରେ ଅନ୍ୟାୟ କଥା । ରାଧାନାଥ ମଣିଷ ନୁହନ୍ତି— ଦେବତା ।

---

ମୁଦ୍ରାକର—ଶ୍ରୀ ବିନୋଦବିହାରୀ ମିଶ୍ର, ଜନତା ପ୍ରେସ୍
ରାଜାବଗିଚା—କଟକ-୧